

( କ୍ଷୁଦ୍ର ନାଟକ ସଂକଳନ )

# ଆନନ୍ଦ ଚନ୍ଦ୍ର ପଣ୍ଡି

ରେଖାଚିତ୍ର
(କ୍ଷୁଦ୍ର ନାଟକ ସଂକଳନ)

ନାଟ୍ୟକାର : ଆନନ୍ଦ ଚନ୍ଦ୍ର ପହି

ପ୍ରକାଶିକା :
ଅରୁନ୍ଧତୀ ପହି
ଘର ନଂ. ୧୭୯, ଟାଇପ୍ - ଇ
ୟୁନିଟ୍ - ୮, ଭୁବନେଶ୍ୱର - ୧୨

ପ୍ରଚ୍ଛଦ ଶିଳ୍ପୀ : ଅଧ୍ୟାପକ ବଳଦେବ ମହାରଥୀ

ପ୍ରଥମ ପ୍ରକାଶ : ୧୯୯୩

ମୁଦ୍ରଣ : ଶ୍ରୀ ନିଶାମଣି ପ୍ରେସ୍
ଶାସ୍ତ୍ରୀନଗର, ଭୁବନେଶ୍ୱର

ମୂଲ୍ୟ : ୨୮ ଟଙ୍କା (ବୋର୍ଡ ବନ୍ଧେଇ)

ପ୍ରାପ୍ତିସ୍ଥାନ :
* ଘର ନଂ ୧୭୯, ଟାଇପ୍ - ଇ, ୟୁନିଟ୍ - ୮, ଭୁବନେଶ୍ୱର - ୧୨
* ଗ୍ରନ୍ଥାଳୟ, ପୂଜା ମାର୍କେଟ, ଭୁବନେଶ୍ୱର
* ସଦ୍‌ଗ୍ରନ୍ଥ ମନ୍ଦିର, ବାରକ୍‌ସ, ବ୍ରହ୍ମପୁର

REKHACHITRA
(Short Play Collection)

Play write : Ananda Chandra Pahi

Publisher : Arundhati Pahi
Qrs. No 179, Type - E, Unit-8, Bhubaneswar-12

Cover design : Baladev Moharatha

First Edition : 1993

Printer : Shree Nishamani Press, Sastrinagar, Bhubaneswar

Price : Rs. 28-00 (Board Binding)

Place of availability :
* Qrs. No. 179, Type - E, Unit-8, Bhubaneswar-12
* Granthalaya, Puja Market, Bhubaneswar
* Sadgrantha Mandir, Baraks, Berhampur

# ନିଜକଥା

ନାଟକ ଆମ ସାହିତ୍ୟର ଏକ ବଳିଷ୍ଠ ବିଭାଗ । କିନ୍ତୁ ଆଜି ଓଡ଼ିଶାରେ କେତେଜଣ ନାଟକ ଲେଖୁଛନ୍ତି ? ପ୍ରଥମ ଧାଡ଼ିର ନାଟ୍ୟକାର (ମୃତ ଓ ଜୀବିତ)ଙ୍କ ନାଆଁ ଗଣି ବସିଲେ ଦଶ/ପନ୍ଦରରୁ ଅଧିକ ହେବ ନାହିଁ ।

ଆମ ରାଜ୍ୟରେ ନାଟକର ଏ ଅବସ୍ଥା କାହିଁକି ? କାହିଁକି ସ୍ଥାୟୀ ନାଟ୍ୟ ମଞ୍ଚ ଭାଙ୍ଗିଗଲା, କାହିଁକି ସ୍ଥାୟୀ ନାଟ୍ୟ ସଂସ୍ଥା ଲୋପ ପାଇଗଲା ? କାହିଁକି ଆଜି ଅଧିକ ସଂଖ୍ୟାର ଯୁବକ/ଯୁବତୀ ନାଟକ ରଚନା ପାଇଁ ଆଗଭର ହେଉ ନାହାଁନ୍ତି ? ପ୍ରକାଶକମାନେ କାହିଁକି ନାଟକ ପ୍ରକାଶନ ପାଇଁ ଆଗ୍ରହ ପ୍ରକାଶ କରୁ ନାହାଁନ୍ତି ?

ଏ ସବୁର କାରଣ ଦର୍ଶାଇବାକୁ ଯାଇ କେତେକ କହନ୍ତି ଚଳଚିତ୍ର ନାଟକ, ଦୂରଦର୍ଶନ ନାଟକ ଓ ବେତାର ନାଟକ ସହିତ ହେଉଥିବା ପ୍ରତିଯୋଗିତାରେ ମଞ୍ଚ ନାଟକ ପଛରେ ପଡ଼ିଗଲା । ଖୁବ୍ ସହଜରେ, ଅଳ୍ପ ଖର୍ଚ୍ଚରେ ଓ ଅଳ୍ପ ସମୟ ଭିତରେ ଲୋକମାନେ ମନୋରଂଜନର ସୁବିଧା ଚଳଚିତ୍ର, ଦୂରଦର୍ଶନ ଓ ବେତାରରୁ ପାଇଲେ । ତେଣୁ ଧୀରେ ଧୀରେ ମଞ୍ଚ ନାଟକ ଠାରୁ ଲୋକମାନେ ଦୂରେଇଗଲେ । ତା ଛଡ଼ା ଅପେରା ମଞ୍ଚ ନାଟକର ବିକଳ୍ପ ଭାବେ ଠିଆ ହେଲା । ତାହା ଚଳଚିତ୍ର ଓ ମଞ୍ଚ ନାଟକ ଉଭୟର ମିଶ୍ରଣ ଶୈଳୀରେ ନାଟକ ପରିବେଷଣ କଲା । ବିଭିନ୍ନ ପର୍ବପର୍ବାଣି ସମୟରେ ସହର ଛାଡ଼ି ଗାଆଁ ଗାଆଁ ବୁଲି ଲୋକମାନଙ୍କ ପାଖରେ ପହଞ୍ଚିଲା ।

ଆମ ନାଟକ ସମ୍ପର୍କରେ ଆଉ ଗୋଟିଏ କଥା କେତେକ ଉଠାନ୍ତି । ସେମାନେ କୁହନ୍ତି ୧୯୬୮ ମସିହା ପର୍ଯ୍ୟନ୍ତ ଆମ ନାଟକ ଗୋଟିଏ ଧାରାରେ ଗତି କରୁଥିଲା । ତା'ପରେ ଆମ ରାଜ୍ୟର ନାଟକ ଭିତରକୁ ପଶି ଆସିଲା ପରୀକ୍ଷା ପବନ ଦମକାଏ । ଅବଶ୍ୟ ସାହିତ୍ୟର ପ୍ରତ୍ୟେକ ବିଭାଗ ପରି ନାଟକରେ ପରୀକ୍ଷା ସ୍ୱାଗତଯୋଗ୍ୟ । କିନ୍ତୁ ଦୁର୍ବୋଧ୍ୟ କବିତାପରି ଦୁର୍ବୋଧ୍ୟ ନାଟକ ଲେଖା ଚାଲିଲା । ମଞ୍ଚସ୍ଥ ମଧ୍ୟ ହେଲା । ନୂଆ କ'ଣ ହେଉଛି ବୋଲି ଦର୍ଶକମାନେ କିଛି ଦିନ ଅପେକ୍ଷା କଲେ ।

କିନ୍ତୁ ନୂଆ ନାଆଁରେ ଯାହା ଗ୍ଭଲିଲା ତାହା ଅତ୍ୟନ୍ତ ନିରସ, କ୍ଲାନ୍ତିକର, ବିରକ୍ତିକର । ଧୀରେ ଧୀରେ ଦର୍ଶକମାନଙ୍କ ସଂଖ୍ୟା କମିଲା । ସ୍ଥାୟୀ ରଙ୍ଗମଞ୍ଚ ଗୁଡ଼ିକ କ୍ଷତିଗ୍ରସ୍ତ ହେଲେ । ନାଟକ ଜନ ଜୀବନଠାରୁ ଦୂରେଇ ଗଲା ।

ଅବଶ୍ୟ ମଞ୍ଚ ନାଟକର ଆଜି ଏ ଅବସ୍ଥା ନାହିଁ । ଲୋକମାନେ ପରୀକ୍ଷା ମୂଳକ ନାଟକକୁ ଗ୍ରହଣ ନ କରିବାରୁ ସିଏ ତା ବାଟରେ ଫେରି ଯାଇଛି । ବର୍ତ୍ତମାନ ବାସ୍ତବଧର୍ମୀ, କଳାତ୍ମକ, ନିଜକ ନାଟକର ଧାର ମଞ୍ଚ ନାଟକ ଜଗତକୁ ଫେରି ଆସିଛି । ଏବେ ସଫଳ ମଞ୍ଚ ନାଟକ ତାର ଆତ୍ମା, କଳା, କାରିଗରୀ ସବୁଥିରେ ଦର୍ଶକଙ୍କୁ ମୁଗ୍ଧ, ତନ୍ମୟ ଓ ଚକିତ କରୁଛି । ଦର୍ଶକମାନଙ୍କୁ ଆନନ୍ଦ ଦେଇ ପାରୁଛି ।

ନାଟକ ଗୁଡ଼ିକ ଯେ ପଠନୀୟ ଏଥିରେ ଦ୍ୱିମତ ନାହିଁ । ଯେଉଁ ସମସ୍ୟା ଗୋଟିଏ ଗଳ୍ପ ବା ଉପନ୍ୟାସ ଜରିଆରେ ଉପସ୍ଥାପିତ କରଯାଇ ପାରିବ, ତାହା ମଧ୍ୟ ଗୋଟିଏ ନାଟକ ଜରିଆରେ ଉପସ୍ଥାପିତ କରଯାଇପାରିବ । ଗଳ୍ପଟିଏ କି ଉପନ୍ୟାସଟିଏ ପଢ଼ିଲେ ପାଠକମାନେ ଯେତିକି ଆନନ୍ଦ ପାଇବେ, ନାଟକଟିଏ ପଢ଼ିଲେ ସେତିକି ଆନନ୍ଦ ପାଇବେ । ମାତ୍ର ଏ କଥା ସତ୍ୟ ଯେ ନାଟକଟି ମଞ୍ଚସ୍ଥ ହେଲେ ତାହା ଅପେକ୍ଷା ଯଥେଷ୍ଟ ଅଧିକ ଆନନ୍ଦ ଦେବ । ଏହା ସତ୍ତ୍ୱେ ଏବେ ମଧ୍ୟ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଯଥା ଗଳ୍ପ ଉପନ୍ୟାସ ପୁସ୍ତକ ଠାରୁ ପ୍ରକାଶିତ ନାଟକ ପୁସ୍ତକ ସଂଖ୍ୟା ଯଥେଷ୍ଟ କମ । ନାଟକ ପୁସ୍ତକଟିଏ ପ୍ରକାଶ କରିବା ପାଇଁ ପ୍ରକାଶକମାନଙ୍କ ପାଖରେ ଆଗ୍ରହ ଥିବା ପରି ମନେ ହୁଏ ନାହିଁ ।

ନାଟକ ପ୍ରକାଶନ ପାଇଁ ଆମ ରାଜ୍ୟରେ କୌଣସି ସ୍ୱତନ୍ତ୍ର ପତ୍ରିକା ନାହିଁ । ପ୍ରକାଶ ପାଉଥିବା ସାହିତ୍ୟ ପତ୍ରିକା ଗୁଡ଼ିକରେ ପ୍ରବନ୍ଧ, ଗଳ୍ପ କବିତା ଓ ଉପନ୍ୟାସ ସ୍ଥାନ ପାଉଥିବା ବେଳେ ନାଟକ ସେ ସୁବିଧାରୁ ପ୍ରାୟ ବଞ୍ଚିତ । କୌଣସି ପତ୍ରିକାରେ ନିୟମିତ ଭାବେ ନାଟକ ପ୍ରକାଶନର ବ୍ୟବସ୍ଥା ନାହିଁ ।

ସ୍ଥାୟୀ ରଙ୍ଗମଞ୍ଚଗୁଡ଼ିକ ଭାଙ୍ଗି ଯାଇଥିବାରୁ ନୂଆ ନାଟକଟିଏ ଲେଖା ହେଲେ ତାହା ମଞ୍ଚସ୍ଥ କରଯିବାର ସୁବିଧା ମିଳୁ ନାହିଁ । ଲିଖିତ ପାଣ୍ଡୁଲିପିଟିଏ ବର୍ଷ ବର୍ଷ ଧରି ଅପେକ୍ଷା କରୁଛି ମଞ୍ଚ ଆଲୋକ ଦେଖିବାକୁ । ଅବଶ୍ୟ ବିଭିନ୍ନ ସୌଖୀନ ସଂସ୍ଥା- କ୍ଲବ୍, କଲେଜ କିଛି କିଛି ନାଟକ ମଞ୍ଚସ୍ଥ କରୁଛନ୍ତି; କିନ୍ତୁ ନାଟକ ପାଣ୍ଡୁଲିପିଟି ସେମାନଙ୍କ ହାତକୁ ଯିବାର ସହଜ ବ୍ୟବସ୍ଥାର ବାଟ ଫିଟି ପାରି ନାହିଁ । ନୂଆ ନାଟକଟିଏ ଖୋଜୁଥିବା ସଂସ୍ଥା ମନ ମୁତାବକ ନାଟକଟିଏ ପାଉନାହିଁ ।

ନାଟ୍ୟକାର ପାଖରେ ତା ପାଣ୍ଡୁଲିପିଟି ପଡ଼ି ରହୁଛି । ମଞ୍ଚଟିଏ ପାଉ ନାହିଁ । ଏ ସବୁର ଯୋଗା ଯୋଗ ସୂତ୍ରଟିଏ ଏ ଯାଏ ମିଳିନାହିଁ । କେବେ ମିଳିବ ତାହା ମଧ୍ୟ କହି ହେଉ ନାହିଁ ।

ଦୂରଦର୍ଶନ ଓ ଆକାଶବାଣୀ ପାଇଁ କିଛି ନାଟକ ଅବଶ୍ୟ ଲେଖା ହେଉଛି । ଦୂରଦର୍ଶନ ଓ ଆକାଶବାଣୀ ନାଟକ ଲେଖୁଥିବା ଅନେକ ନାଟ୍ୟକାର ଗୋଟିଏ, ଦୁଇଟି ନାଟକ ଲେଖିବା ପରେ ନୀରବି ଯାଉଛନ୍ତି । ସେମାନଙ୍କ ମଧ୍ୟରୁ ପ୍ରାୟ କେହି ମଞ୍ଚ ନାଟକ ଲେଖାରେ ହାତ ଦେଉ ନାହାଁନ୍ତି ।

ଓଡ଼ିଆ ସାହିତ୍ୟର ଭଲ ଗଳ୍ପଟିଏ କି ଭଲ ଉପନ୍ୟାସଟିଏ କିମ୍ବା ଭଲ ନାଟକଟିଏ ନିଆ ଯାଇ ସିନେମା କରିବାର ପରଂପରା ଏବେ ଆଉ ଓଡ଼ିଶାରେ ନଥିବା ପରି ମନେ ହେଉଛି । ଭଲ ନାଟ୍ୟକାର ଦ୍ୱାରା ସିନେମା କାହାଣୀର ଚିତ୍ରନାଟ୍ୟ ଓ ସଂଳାପ ଲେଖାଇବାର ପରଂପରା ଅନେକ ଦିନରୁ ଅଚଳ ହୋଇ ଗଲାଣି । ହିନ୍ଦି ଓ ତେଲୁଗୁ ସିନେମା ଶୈଳୀରେ ପ୍ରଭାବିତ ଅନେକ ଫର୍ମୁଲା ସିନେମା ପ୍ରସ୍ତୁତ ଓ ପ୍ରଦର୍ଶନ କରଯାଉଛି । ଏ ସବୁ ସିନେମା ପାଇଁ ଚିତ୍ରନାଟ୍ୟ ପ୍ରସ୍ତୁତ କରିବାପାଇଁ ନାଟ୍ୟକାରର ଭୂମିକାକୁ ମଧ୍ୟ ଅନେକେ ସ୍ୱୀକାର କରୁ ନାହାଁନ୍ତି । ଫଳରେ ସିନେମାର କଳାତ୍ମକ ମାନ ହ୍ରାସ ପାଉଛି ।

ସ୍କୁଲ, କଲେଜ, କ୍ଲବ ଇତ୍ୟାଦିରେ ବାର୍ଷିକ ଉତ୍ସବରେ ନାଟକ ଅଭିନୀତ ହେବା ବହୁଦିନର ପରଂପରା ଥିଲା । ହୁଏତ ସେମାନଙ୍କ ମନ ପସନ୍ଦର ନାଟକଟିଏ ନ ମିଳିବାରୁ ସେମାନେ ପ୍ରାୟ ବାର୍ଷିକୋତ୍ସବରେ ଆଉ ନାଟକ ମଞ୍ଚସ୍ଥ ନ କରି ଗୀତିନାଟ୍ୟ କିମ୍ବା ମେଲୋଡ଼ି କିମ୍ବା ଭିଡ଼ିଓ ସୋ କରି ସନ୍ତୁଷ୍ଟ ରହୁଛନ୍ତି ।

ଏବେ ସିନେମା, ଅପେରା, ଦୂରଦର୍ଶନ ନାଟକ ଓ ରେଡ଼ିଓ ନାଟକ ଚାଲିଛି । ଏ ସବୁ ଚାଲୁ ରହିବାର ବିଧିବଦ୍ଧ ବ୍ୟବସ୍ଥା ରହିଛି । ବେସରକାରୀ ଓ ସରକାରୀ ପୃଷ୍ଠ ପୋଷକତା ରହିଛି । କିନ୍ତୁ ମଞ୍ଚ ନାଟକର ସ୍ଥାୟୀ ମଞ୍ଚ ନାହିଁ, ପୃଷ୍ଠପୋଷକତା ନାହିଁ । ଧାରା ବାହିକ ଭାବେ ବିଭିନ୍ନ ସ୍ଥାନରେ ମଞ୍ଚ ନାଟକ ଅଭିନୀତ ହେବାର କୌଣସି ନିର୍ଭର ଯୋଗ୍ୟ ବ୍ୟବସ୍ଥା ନାହିଁ କି ଅନୁଷ୍ଠାନ ନାହିଁ ।

ଏ ବିଷୟରେ ଗଭୀର ଭାବେ ଚିନ୍ତା କରିବା ପାଇଁ ମୁଁ ସମସ୍ତ ନାଟ୍ୟକାର, ନାଟ୍ୟପ୍ରେମୀ ଦର୍ଶକ, ନାଟକ ସହିତ ବିଭିନ୍ନ ବାଟରେ ସଂପୃକ୍ତ ଥିବା ବ୍ୟକ୍ତିବିଶେଷ ଏବଂ ନାଟ୍ୟ ଅନୁଷ୍ଠାନମାନଙ୍କୁ ନିବେଦନ କରୁଛି । ଆନ୍ତରିକତାର ସହିତ ଚିନ୍ତା

କରେ ମଞ୍ଚ ନାଟକର ପୁନରୁଦ୍ଧାର ପାଇଁ କିଛି ବାଟ ବାହାରିବ, ମୁଁ ଏ ବିଷୟରେ ଆଶାବାନ ।

ବିଭିନ୍ନ ସମୟରେ ମୁଁ ଲେଖିଥିବା ବେତାର ଓ ଦୂରଦର୍ଶନ ନାଟକଗୁଡ଼ିକୁ ମଞ୍ଚୋପଯୋଗୀ କରି ପ୍ରକାଶ କରିବା ପାଇଁ ମୋର ବହୁ ଦିନରୁ ଇଚ୍ଛା ଥିଲେବି ସମୟ ଅଭାବରୁ ତାହା କରି ପାରୁ ନଥିଲି । ପ୍ରକାଶିକା ଶ୍ରୀମତୀ ଅରୁନ୍ଧତୀ ପତିଙ୍କ ଆନ୍ତରିକ ପ୍ରୋତ୍ସାହନ ଯୋଗୁ ଆଜି ଏ ପୁସ୍ତକଟି ପ୍ରକାଶିତ ହେବାକୁ ଯାଉଛି ।

ଏଥିରେ ପ୍ରକାଶିତ ତିନୋଟି ଯାକ ନାଟକ ଖୁବ୍ ଅଳ୍ପ ଖର୍ଚ୍ଚରେ ମଞ୍ଚସ୍ଥ କରଯାଇ ପାରିବ । ପ୍ରଥମ ନାଟକଟି ସଫଳ ଭାବେ ରବୀନ୍ଦ୍ରମଣ୍ଡପରେ ମଞ୍ଚସ୍ଥ ହୋଇ ସଚିବାଳୟ ଆନ୍ତଃ ବିଭାଗୀୟ ନାଟକ ପ୍ରତିଯୋଗିତାରେ ପୁରସ୍କାର ପାଇବା ସଙ୍ଗେ ସଙ୍ଗେ ଉଚ୍ଚ ପ୍ରଶଂସିତ ହୋଇଛି । ଏହି ନାଟକଟି ୧୯୯୨ ମସିହା ସର୍ବଭାରତୀୟ ବେତାର ନାଟକ ପ୍ରତିଯୋଗୀତାରେ ମେରିଟ୍ ସାର୍ଟିଫିକେଟ୍ ପାଇବାର ଗୌରବ ଅର୍ଜନ କରିଛି ।

ଅନ୍ୟ ଦୁଇଟି ନାଟକ ମଞ୍ଚସ୍ଥ ହୋଇ ନାହିଁ । ଯଦି କୌଣସି ସଂସ୍ଥା ଏହି ନାଟକ ଦୁଇଟିକୁ କେବେ ମଞ୍ଚସ୍ଥ କରିବାରେ କିଛି ଅସୁବିଧାର ସମ୍ମୁଖୀନ ହୁଅନ୍ତି ତେବେ ମୋତେ ଦୟାକରି ଜଣାଇଲେ ପରବର୍ତ୍ତି ସଂସ୍କରଣରେ ତାହା ସୁଧାରି ନେବାକୁ ମୁଁ ସମର୍ଥ ହୁଅନ୍ତି ।

ଏହି ନାଟକ ଗୁଡ଼ିକ ରଚନା ପାଇଁ ମୋତେ ଉତ୍ସାହିତ କରିଥିବାରୁ ଖ୍ୟାତି ସମ୍ପନ୍ନ ନାଟ୍ୟକାର ଶ୍ରୀଯୁକ୍ତ ବିଜୟ ମିଶ୍ର, ବିଶିଷ୍ଟ ନାଟ୍ୟକାର ଓ ଗାଳ୍ପିକ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପଟ୍ଟନାୟକ, ସମାଲୋଚକ ଡକ୍ଟର ସୁରେନ୍ଦ୍ର କୁମାର ମହାରଣା, ବିଶିଷ୍ଟ ଗାଳ୍ପିକ ଶ୍ରୀଯୁକ୍ତ ଉତ୍ତମ କୁମାର ପ୍ରଧାନ, ପ୍ରତିଭାବାନ ଗାଳ୍ପିକ ଶ୍ରୀଯୁକ୍ତ ସୁରେନ୍ଦ୍ର ମିଶ୍ର, ଔପନ୍ୟାସିକ ଶ୍ରୀଯୁକ୍ତ ରାଧାମୋହନ ମହାପାତ୍ର, ଓ ସଜୀବନୀର ସମ୍ପାଦକ ଶ୍ରୀଯୁକ୍ତ ଗଣେଶ ପ୍ରସାଦ ପରିଡ଼ା, ବିଶିଷ୍ଟ ଗୀତିନାଟ୍ୟକାର ବନ୍ଧୁ ଶ୍ରୀଯୁକ୍ତ ରଘୁନାଥ ରାଉତ, ବିଶିଷ୍ଟ ଲଳିତ ନିବନ୍ଧକାର ଶ୍ରୀଯୁକ୍ତ ବୈଷ୍ଣବ ଚରଣ ମହାନ୍ତି ଏବଂ ଭୁବନେଶ୍ୱରର ଅନନ୍ୟ ସାହିତ୍ୟ ଅନୁଷ୍ଠାନର ସମସ୍ତ ବନ୍ଧୁମାନଙ୍କ ପାଖରେ ମୁଁ କୃତଜ୍ଞ ।

ନିହଲ ପ୍ରସାଦ
ଢ଼େଙ୍କାନାଳ

ଆନନ୍ଦ ଚନ୍ଦ୍ର ପତି

# ନାଟକ ସୂଚୀ

# ରେଖାଚିତ୍ର

(ସାମାଜିକ ନାଟକ)

* ଏହି ନାଟକଟି ୧୯୯୨ ମସିହା ସର୍ବ ଭାରତୀୟ ବେତାର ନାଟକ ପ୍ରତିଯୋଗିତାରେ ମେରିଟ୍ ସାର୍ଟିଫିକେଟ୍ ଲାଭ କରିବାର ଗୌରବ ଅର୍ଜନ କରିଛି ।

* ଏହି ନାଟକଟି ଓଡ଼ିଶା ସଚିବାଳୟ ଆନ୍ତଃବିଭାଗୀୟ ନାଟକ ପ୍ରତିଯୋଗିତାରେ ପୁରସ୍କୃତ ।

* ନାଟକଟି ପାଇଁ ମାତ୍ର ଗୋଟିଏ ସେଟ୍ (ଗୃହଘର) ଆବଶ୍ୟକ ।

* ନାଟକଟି ମଞ୍ଚସ୍ଥ କରିବା ପାଇଁ ଜଣେ ମାତ୍ର ନାରୀ ଚରିତ୍ର ଆବଶ୍ୟକ ।

* ନାଟକଟିର ଅଭିନୟ ସମୟ ଏକ ଘଣ୍ଟା ପନ୍ଦର ମିନିଟ୍ ।

ସର୍ବଭାରତୀୟ ବେତାର ନାଟକ ପ୍ରତିଯୋଗିତା ପାଇଁ **ଆକାଶବାଣୀ,** କଟକ (ସି. ବି. ଏସ.)ଙ୍କ ଦ୍ୱାରା ପ୍ରସ୍ତୁତ ଓ ଓଡ଼ିଶା ସଚିବାଳୟ ଆନ୍ତଃବିଭାଗୀୟ ନାଟକ ପ୍ରତିଯୋଗିତାରେ ଶକ୍ତି ବିଭାଗ କର୍ମଚାରୀଙ୍କ ଦ୍ୱାରା ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପରେ ଅଭିନୀତ ନାଟକର ବିଭିନ୍ନ ଭୂମିକାରେ :—

| **ଚରିତ୍ର** | **ଆକାଶବାଣୀ ନାଟକ** | **ସଚିବାଳୟ ଆନ୍ତଃବିଭାଗ ନାଟକ** |
|---|---|---|
| ନିର୍ଦ୍ଦେଶକ | ଜୟଦେବ ଦାସ | ପରମାନନ୍ଦ ପାଲ |
| ପ୍ରଯୋଜକ | ସୟଦ ଅବଦୁଲ ଦୟାଲ | ନିରଂଜନ ରାଉତ |
| କ୍ୟାମେରା ମ୍ୟାନ | ରମେଶ ଚନ୍ଦ୍ର ପଣ୍ଡା | ସୁଶାନ୍ତ କୁମାର ମହାନ୍ତି |
| ମେକଅପ୍ ମ୍ୟାନ | କିଶୋର ମହାନ୍ତି | ରମାକାନ୍ତ ଖୁଣ୍ଟିଆ |
| ଶୁଭେନ୍ଦୁ | ଜ୍ଞାନ ରଂଜନ ମହାନ୍ତି | ବିଜୟ କୁମାର ମହାନ୍ତି |
| ସରପଞ୍ଚ | ମାଧବାନନ୍ଦ କର | ଶ୍ୟାମ ଚରଣ ସାହୁ |
| ନଖିଆ | ଭୀମ ସିଂହ | ରାଧାମୋହନ ଜେନା |
| ନଟିଆ | – | ବାଳକୃଷ୍ଣ |
| ଜଳିଆ | ଶାରଦା ପ୍ରସାଦ ମହାନ୍ତି | ଗଙ୍ଗାଧର ପଲେଇ |
| ମନ୍ଦି | ଆଶାଲତା ରାୟ | ଉମାରାଣୀ ଦାସ |

<u>ଶିଶୁ ଚରିତ୍ର</u>

| | | |
|---|---|---|
| ସେବତୀ | ପ୍ରିୟଙ୍କା ପ୍ରିୟଦର୍ଶିନୀ ମିଶ୍ର | ଲିପି |
| ଟିମା | କମଳନାଥ ସାହୁ | ବାପି |
| ପରିକଳ୍ପନା/ନିର୍ଦ୍ଦେଶନା | ସୁହାସ କୁମାର ମହାନ୍ତି | ନିରଂଜନ ରାଉତ |



ନିପଟ ମଫସଲ ଗାଆଁର ମାଟି ଝାଟିର ଘରଟିଏ । ଉପରେ ନଡ଼ା ଛପର । କାନ୍ଥରୁ କେଉଁଠି କେମିତି ଖଣ୍ଡେ ଖଣ୍ଡେ ମାଟି ଝଡ଼ି ପଡ଼ିଛି । ଚାଳରୁ ଏଠି ସେଠି ଉଡ଼ି ଯାଇଛି । ଘର ଆଗରେ ପାଣି ମାଠିଆ । ତା କଡ଼କୁ ଗୋଟିଏ ମାଟି କୁଣ୍ଡରେ ପାଣି ଥୁଆ ହୋଇଛି ।

ସମୟ ରାତି ପାହାନ୍ତା । ବାହାରେ ସାମାନ୍ୟ ଅନ୍ଧାର ଅଛି । ଦୂରରୁ ଶୁଭୁଛି କୁକୁଡ଼ାର ରଡ଼ି । କଥାବାର୍ତ୍ତା ହୋଇ ପ୍ରବେଶ କଲେ ଚାରିଜଣ । ଆଗରେ ସେ ଅଞ୍ଚଳର ସରପଞ୍ଚ, ତାଙ୍କ ପଛରେ ଭୁବନେଶ୍ୱରରୁ ଆସିଥିବା ଫିଲ୍ମ ସୁଟିଂ ଦଳର ନିର୍ଦ୍ଦେଶକ, ପ୍ରଯୋଜକ ଓ କ୍ୟାମେରା ମ୍ୟାନ ।

ସରପଞ୍ଚ : ସାର୍ ! ଏଇ ଘରଟା କେମିତି ହେଇଚି ? [ପ୍ରଯୋଜକ, ନିର୍ଦ୍ଦେଶକ ଓ କ୍ୟାମେରା ମ୍ୟାନ ସେହି ଚାଳ ଘରକୁ ବିଭିନ୍ନ ଭାବରେ ଦେଖିଲେ । ଘର ଆଗରେ, କଡ଼ରେ, କଣରେ ଏହିପରି ବିଭିନ୍ନ ସ୍ଥାନରେ ଠିଆ ହୋଇ କ୍ୟାମେରା ଲେନ୍ସରେ ଦେଖିବାକୁ ଚେଷ୍ଟା କଲେ] କ'ଣ ସାର୍ ମନକୁ ପାଉଚି ନା ନାହିଁ ?

ପ୍ରଯୋଜକ : ପ୍ରଭଂଜନବାବୁ କ'ଣ କହୁଛନ୍ତି ? ହାଓ ଡୁ ଇଉ ଲାଇକ୍ ଦି ସଟ୍ ।

ନିର୍ଦ୍ଦେଶକ : ନାଇସ୍, ଭେରି ନାଇସ୍ । ଠିକ୍ ଅଛି । ଏଇ ଘର ଆମର ଦରକାର ।

ପ୍ରଯୋଜକ : ଆମେ ଆଜି ଯେତେଟା ଘର ଦେଖିଲେ ସବୁଠୁ ଏଇ ଘରଟା ଭଲ, ମାନେ ସବୁଠୁ ଗରିବ ଗରିବ ଲାଗୁଛି । ଆଚ୍ଛା ସତ୍ୟବାବୁ ଆପଣଙ୍କୁ କେମିତି ଲାଗୁଛି ?

କ୍ୟାମେରା ମ୍ୟାନ : ରିଏଲି ଅତି ଚମତ୍କାର ହୋଇଛି ।

ନିର୍ଦ୍ଦେଶକ : ତିନି ଚାରିଟା ଷ୍ଟିଲ୍ ଫଟୋ ନିଅନ୍ତୁ ସତ୍ୟବାବୁ । ହଁ ସେଇଠୁ ଗୋଟେ ନିଅନ୍ତୁ ।

[କ୍ୟାମେରା ମ୍ୟାନ ଗୋଟିଏ ଫଟୋ ନେଲେ । ଆଉ ଗୋଟିଏ ଫଟୋ ନେବା ପାଇଁ ଭଲ ଆଙ୍ଗଲ୍‌ଟିଏ ଖୋଜିଲେ ।]

ପ୍ରଯୋଜକ : ଏତେ ପୋଜିସନ କ'ଣ ଦେଖୁଛନ୍ତି ସତ୍ୟବାବୁ, ପ୍ରତି ଆଙ୍ଗଲ୍‌ରୁ ଗୋଟେ ଗୋଟେ ଫଟୋ ନେଇ ଯାଆନ୍ତୁ । ଷ୍ଟିଲ୍ ଫଟୋ ବହୁତ ଦରକାର ।

[କ୍ୟାମେରା ମ୍ୟାନ ବିଭିନ୍ନ ଦିଗରୁ ବିଭିନ୍ନ ଦୂରତାରୁ ନଣିଆ ଘରର ଫଟୋ ନେଲେ ।]

ନିର୍ଦ୍ଦେଶକ : ସତ୍ୟବାବୁ ଆମ ସମସ୍ତଙ୍କର ଗୋଟେ ଫଟୋ ନେଇ ଯାଆନ୍ତୁ । ସରପଞ୍ଚ ବାବୁ ! ଆରେ ଏଇଠିକି ଆସନ୍ତୁ ।

ପ୍ରଯୋଜକ : ଆରେ ଆସନ୍ତୁନା ! ଫଟୋ ଉଠେଇବାରେ ସଙ୍କୋଚ କ'ଣ ? ରାଜନୀତି କରିବା ଲୋକ କ୍ୟାମେରା ଫେସ୍ କରିବା ପାଇଁ ଆଗ୍ରହ ପ୍ରକାଶ କରିବା କଥା । (ହେ, ହେ। ହୋଇ ହସି ଉଠିଲେ)

ସରପଞ୍ଚ : ନାଇଁ ସାର୍, ମୁଁ କିବା ରାଜନୀତି କରୁଚି ?

ନିର୍ଦ୍ଦେଶକ : ମୋ ଜାଣିବାରେ ଦେଶ ରାଜନୀତି ଠାରୁ ଗାଆଁ ରାଜନୀତି ବେଶୀ ଜଟିଳ । ଆଜି ଆପଣ ସରପଞ୍ଚ, କାଲିକି ବ୍ଲକ ଚେୟାରମ୍ୟାନ, ତାପରେ ଏମ୍. ଏଲ୍. ଏ. । ସେଇଠୁ ତ ଖାଲି କଳ କୌଶଳ କଥା । (ହସିଲେ) ଦଶ, ପଚିଶ ଏମ୍. ଏଲ୍. ଏ.ଙ୍କୁ ହାତ କଲେ ମନ୍ତ୍ରୀ ।

ସରପଞ୍ଚ : ନାଇଁ ଆଜ୍ଞା । (ଖୁସିରେ କୃତକୃତ୍ୟ ହେଲେ)

ପ୍ରଯୋଜକ : ଆସନ୍ତୁ ଏଇଠି ଠିଆ ହୁଅନ୍ତୁ । (ପ୍ରଯୋଜକ ସରପଞ୍ଚଙ୍କୁ ଟାଣି

ଥାଣିଲେ । ସରପଞ୍ଚ ଆସି ନିର୍ଦ୍ଦେଶକ ଓ ପ୍ରଯୋଜକଙ୍କ ମଝିରେ ଠିଆ ହେଲେ । କ୍ୟାମେରା ମ୍ୟାନ ଫଟୋ ନେବାକୁ ପ୍ରସ୍ତୁତ ହେଲେ ।]

କ୍ୟାମେରା ମ୍ୟାନ : (ସରପଞ୍ଚଙ୍କୁ ହାତରେ ଠାରି) ସାର୍ ଆପଣ ଆଉ ଟିକେ କ୍ଲୋଜହୋଇ ଯାଆନ୍ତୁ । ହଁ, ହଁ, ସେତିକି । ଲୁକ୍‌ଟା ଟିକେ ସାମ୍ନାକୁ ଦିଅନ୍ତୁ । ହଁ, ହେଲା । ରେଡ଼ି ଓ୍ୱାନ, ଟୁ, ଥ୍ରୀ । (ସରପଞ୍ଚ ଖସିଯାଉଥିଲେ । ନିର୍ଦ୍ଦେଶକ ତାଙ୍କୁ ଅଟକାଇଲେ ।)

ନିର୍ଦ୍ଦେଶକ : ଆଉ ଟିକେ ଠିଆ ହୁଅନ୍ତୁ ସରପଞ୍ଚବାବୁ । ସତ୍ୟବାବୁ ଆପଣ ଆସି ଏଇଠି ମୋ ଜାଗାରେ ଠିଆ ହୁଅନ୍ତୁ, ମୁଁ ଯାଏ ଗୋଟେ ସ୍ନାପ୍ ନେଇ ଯିବି ।

କ୍ୟାମେରା ମ୍ୟାନ : ଠିକ୍ ଅଛି । ନିଅନ୍ତୁ । [ କ୍ୟାମେରା ବଢ଼ାଇ ଦେଇ ନିର୍ଦ୍ଦେଶକଙ୍କ ସ୍ଥାନରେ ଠିଆ ହେଲେ । ନିର୍ଦ୍ଦେଶକ କ୍ୟାମେରା ଧରି ଆଉ ଗୋଟିଏ ସ୍ନାପ୍ ନେଲେ ]

ପ୍ରଯୋଜକ : ଠିକ୍ ଅଛି ସରପଞ୍ଚ ବାବୁ ! ଆମେ କ୍ୟାମେରା ଆଣି ଆସୁଛୁ, ଆପଣ ଏ ଲୋକ ସହିତ କଥା ପକ୍‌କା କରନ୍ତୁ । ତାଙ୍କୁ କହିବେ ସିଏ କୁଆଡ଼େ କାମକୁ ନଯାଇ ଘରେ ଥିବ । ହଁ ଶୁଣନ୍ତୁ । ( ସରପଞ୍ଚବାବୁ ପ୍ରଯୋଜକଙ୍କ ଆଡ଼କୁ ଲାଗି ଆସିବା ବେଳେ) ଆପଣ ଟିକେ ସେଇଠି ଠିଆ ହୁଅନ୍ତୁ । ପ୍ରଭଂଜନ ବାବୁ ! ଆପଣ ଟିକେ ଶୁଣିଲେ । [ପ୍ରଯୋଜକ ଓ ନିର୍ଦ୍ଦେଶକ ଦୁହେଁ ମଞ୍ଚର ଗୋଟିଏ କଡ଼କୁ ଯାଇ ଫୁସ୍ ଫୁସ୍ ହୋଇ କ'ଣ କଥାବାର୍ତ୍ତା ହେଲେ । ତାପରେ ସରପଞ୍ଚଙ୍କୁ ଡାକି ବ୍ୟାଗ୍‌ରୁ ବାହାର କରି ବିଡ଼ାଏ ନୋଟ୍ ଦେଲେ । ସରପଞ୍ଚ ତରବର ହୋଇ ସେତକ ପକେଟରେ ପୂରାଉ ପୂରାଉ କ୍ୟାମେରାମ୍ୟାନ ତାଙ୍କର ଫଟୋ ଉଠାଇ ନେଲେ ।]

ସରପଞ୍ଚ : (ହସି ହସି ବେକ ଉପର ବାଳକୁ କୁଣ୍ଡାଉ କୁଣ୍ଡାଉ) ସାର୍ ଗାଆଁ କୁଳକୁ କିଛି ନ ଦେଲେ ସେ ଟୋକାଗୁଡ଼ା ଗଣ୍ଡଗୋଳ କରିବେ ।

ପ୍ରଯୋଜକ : ଆପଣ ଖୁବ୍ ଚାଲାକ ଲୋକ । ସେମାନେ କ'ଣ ଆପଣଙ୍କୁ ବଳେଇ ଯିବେ ?

ସରପଞ୍ଚ : ନାଇଁ ଯେ, ଏତେ ଅଡୁଆରେ କାହିଁକି ପଶିବା ? ସେମାନଙ୍କୁ କିଛି ଧରେଇ ଦେଲେ ସେମାନେ ଭୋଜିଭାତ କରି ଖାଇବେ ।

ନିର୍ଦ୍ଦେଶକ : କେତେ ହେଲେ ଚଳିବ ?

ସରପଞ୍ଚ : ମୁଁ କ'ଣ କହିବି ? ଆପଣ ଯାହା ଦେଖିକି ଦେବେ ।

ପ୍ରଯୋଜକ : ହଜାରେ ହେଲେ ଚଳିବ ?

ସରପଞ୍ଚ : ହଁ ସାର୍, ମୁଁ କହି ପୋଛି ଚଳେଇ ଦେବି ।

ପ୍ରଯୋଜକ : ହଉ ତାହେଲେ ନିଅ । [ବ୍ୟାଗରୁ ଟଙ୍କା ଦେଲେ । କ୍ୟାମେରା ମ୍ୟାନ ଏଥରକ ମଧ୍ୟ ସରପଞ୍ଚ ଟଙ୍କା ନେଉଥିବାର ଫଟୋ ନେଲେ ] ଆଉ କିଛି ଅସୁବିଧା ହେବ ନାହିଁ ତ ?

ସରପଞ୍ଚ : ନାଇଁ ସାର୍ ମୁଁ ସବୁ ସମାଳି ନେବି । କେବଳ... ... ...

ପ୍ରଯୋଜକ : ପୁଣି ଆଉ କ'ଣ ବାକି ରହିଲା ?

ସରପଞ୍ଚ : ନାଇଁ ସାର୍, ମୁଁ କହୁଥିଲି ସେଇ ନଖିଆ କଥା । ସିଏ ଗରିବ ଲୋକ କାମକୁ ନଯାଇ ଘରେ ରହିଲେ ତା ଛୁଆ ପିଲା ଭୋକରେ ରହିବେ । ତାକୁ କିଛି ... ... ... ... ।

ପ୍ରଯୋଜକ : ତାକୁ କେତେ ଦେଲେ ହେବ ?

ସରପଞ୍ଚ : ତା ପାଇଁ ଟଙ୍କା ବିଇଶ ହେଲେ ଢେର୍ ।

ପ୍ରଯୋଜକ : ହଉ ଠିକ୍ ଅଛି ଦିଆଯିବ । କିନ୍ତୁ କାମ ସରିଲେ । ତାକୁ ସେ କଥା କହି ଦେଇଥିବ ।

ସରପଞ୍ଚ : ହଉ ସାର୍ ।

ନିର୍ଦ୍ଦେଶକ : ଆମେ ତା ହେଲେ ଆଉ ଦି, ତିନି ଘଣ୍ଟା, ଛାଡ଼ି କ୍ୟାମେରା ଧରି ଆସୁଛୁ ।

ସରପଞ୍ଚ : ସାର୍ । [ କୃତଜ୍ଞତାରେ ବେକମୂଳର ବାଳକୁ କୁଣ୍ଡାଇ କୁଣ୍ଡାଇ ଦାନ୍ତ ଦେଖାଇ ଅଳ୍ପ ଅଳ୍ପ ହସୁଥିଲେ । ନିର୍ଦ୍ଦେଶକ, ପ୍ରଯୋଜକ ଓ କ୍ୟାମେରା ମ୍ୟାନଙ୍କର ପ୍ରସ୍ଥାନ । ସେମାନେ ଚାଲିଯିବା ପରେ ସରପଞ୍ଚ ସେମାନଙ୍କ ଆଡ଼କୁ କିଛି ସମୟ ଚାହିଁ ରହିଲେ । ତାପରେ ଧୀରେ ଧୀରେ ନଖିଆର ଘର ଆଡ଼କୁ ଗଲେ । ଦୁଆର ମୁହଁରେ ଠିଆ ହୋଇ ନଖିଆକୁ ଡାକିଲେ ]

ନଖିଆ ! ନଖିଆ ! ଏ ନଖିଆ । [କେହି ଶୁଣିଲେ ନାହିଁ । କିଛି ସମୟ ଠିଆ ହେଲେ । ଏ କଡ଼ ସେକଡ଼ ଚାହିଁ ଘର ଦୁଆର ମୁହଁରେ ଦିଆଯାଇଥିବା ତାଟିକୁ ଧଡ଼ ଧଡ଼ କଲେ ।] ନଖିଆ ! ଏ ନଖିଆ !

ନଖିଆ : (ଘର ଭିତରେ ଥାଇ) କିଏ ? ଏତେ ସକାଳୁ କିଏ ?

ସରପଞ୍ଚ : କିରେ ପଦାକୁ ଆସୁନଉଁ ? କ'ଣ ଏତେ ବେଳଯାଏ ଶୋଇଚୁ ?

ନଖିଆ : [ତାଟି ଫିଟାଇ ପଦାକୁ ଆସିଲା । ହାଇମାରି ଆଖି ମଳିଲା । ନଖିଆର ବୟସ ପ୍ରାୟ ୩୦ ବର୍ଷ । ପିନ୍ଧିଛି ଚିରା ଲୁଙ୍ଗି । ରଙ୍ଗ ସାବନା । ଚେହେରା ପତଳା ] ସରପଞ୍ଚ ବାବୁ ! ଏତେ ବେଳେ କୁଆଡ଼େ କେମିତି ?

ସରପଞ୍ଚ : ତୋ ନିଦ କ'ଣ ଏତେ ବେଳଯାଏ ଭଙ୍ଗି ନେଇଁ ?

ନଖିଆ : [ପୁଣି ଥରେ ହାଇ ମାରିଲା । ]

ସରପଞ୍ଚ : ଯା, ମୁହଁ ଧୋଇ ହେଇକି ଆ ।

ନଖିଆ : [ଘର ଆଗରେ ଥିବା ପାଣି ମାଠିଆ ଗଡ଼ାଇ ମୁହଁ ଧୋଇଲା । ଗାମୁଛାରେ ମୁହଁ ପୋଛୁ ପୋଛୁ] ମୋ ଠେଇଁ କଣ କାମଥିଲା ?

ସରପଞ୍ଚ : ତୁ ଏଠିକି ଆ କଉଚି । [ ଏହି ସମୟରେ ନଖିଆର ସ୍ତ୍ରୀ ମନ୍ଦି ଘର ଭିତରୁ ବାହାରି ପହଁରା ଧରି ଗୋବର ପାଣି ପକାଇ ଦୁଆର ଓଳାଇଲା । ସରପଞ୍ଚ ଓ ନଖିଆ ଦୁହେଁ ଅଣ ଆଡ଼ିଆକି ଠିଆ ହୋଇ କଥାବାର୍ତ୍ତା ହେଉଥିଲେ । ]

ନଖିଆ : ମୋ ଠେଇଁ କଣ କାମ ଥିଲା କଉନ! ?

ସରପଞ୍ଚ : କଥା କ'ଣ କି ... ... ... ଏଇ ଆମ ଭୁବନେଶ୍ୱରରୁ ସିନେମାବାଲା ଆସିଚନ୍ତି ।

ନଖିଆ : ଆଜି ସିନେମା ହବ ? କେତେ ବେଳେ ?

ସରପଞ୍ଚ : ନାଇଁ ନାଇଁ ସେମାନେ ସିନେମା ଦେଖେଇବାକୁ ଆସି ନାହାନ୍ତି । ସିନେମା ସୁଟିଂ କରିବାକୁ, ମାନେ ସିନେମା ତିଆରି କରିବାକୁ ଆସିଚନ୍ତି ।

ନଖିଆ : କୋଉଠି ? ଆମ ଗାଁଆରେ ସିନେମା ତିଆରି କରିବେ ?

ସରପଞ୍ଚ : ହଁ, ତୋରି ଘରେ ତିଆରି କରିବେ ।

ନଖିଆ : ମୋ ଘରେ ? ମୋ ଘରେ କଣ ଅଛି ଯେ ସିନେମା ତିଆରି କରିବେ ? ତମ ଘରେ କି କେନା ଘରେ କରୁ ନାହାନ୍ତି ? ବଡ଼ କୋଠା ଘର ଅଛି, ଭଲ ହୁଅନ୍ତା ।

ସରପଞ୍ଚ : ନାଇଁ, ନାଇଁ ସେମାନେ ସବୁ ତୋ ଘର ଦେଖି ଯାଇଚନ୍ତି, ଫଟ ଉଠେଇ ନେଇଚନ୍ତି । ତୋ ଘର ସେମାନଙ୍କ ମନକୁ ଯାଇଚି । ତୋ ଘରେ ସିନେମା କରିବେ । [ ମହି ପାଣି ମାଠିଆ ପାଖରେ ରସ ବାସନ ମାଜୁ ମାଜୁ ସିନେମା ହେବା କଥା ଶୁଣି ସେ ଆଡ଼କୁ ବୁଲିକି ଅନେଇଛି । ] ସେମାନେ ତୋ ଘରର ଫଟ ଉଠେଇବେ । ତୋ ଫଟ ଉଠେଇବେ ଓ ତୋ ସ୍ତ୍ରୀ, ଛୁଆ, ପିଲଙ୍କ ଫଟ ଉଠେଇବେ ।

ନଖିଆ : ଆମ ଫଅଟ କାଇଁକି ଉଠେଇବେ ?

ସରପଞ୍ଚ : ତୋ ଘର ଆଉ ତୋ ଉପରେ ସେମାନେ କ'ଣ ଗୋଟେ ସିନେମା କରିବେ ।

ନଖିଆ : ତମେ କ'ଣ କଉଚ, ମୁଁ କିଛି ବୁଝିପାରୁ ନେଇଁ ।

ସରପଞ୍ଚ : ତୋର କିଛ ବୁଝିବା ଦରକାର ନାହିଁ । ତୁ ଖାଲି ବସିବୁ ସେମାନେ ତୋ ଫଟ ନେବେ । ତତେ ଯାହା ପଗ୍ଭରିବେ ନ ଡରିକି ତାର ଉତ୍ତର ଦବୁ ।

ନଖିଆ : ମତେ ଏସବୁ କେମିତି କେମିତି ନାଗୁଚି । ମୁଁ କିଛି ବୁଝିପାରୁ ନେଇଁ ।

ସରପଞ୍ଚ : ଏଥିରେ ବୁଝିବାର କ'ଣ ଅଛି ? ସେମାନେ ଫଟ ନେବେ । ଦେଖିବୁ ଦିନେ ଏସବୁ ଟିଭିରେ ସିନେମା ହେଇକି ବାହାରିବ । ଆରେ ଏମିତି ଭେଲେକାମିତି ଅନେଇଁଚୁ କ'ଣ ?

ନଖିଆ : ମୁଁ ଆଜି ନୂଆ ଗାଁଆ ସାମୁଲ ଘର କାମକୁ ଯିବି ।

ସରପଞ୍ଚ : ତୁ କାମକୁ ଗଲେ କେମିତି ହବ ? ସେମାନେ ଆଉ ଘଣ୍ଟେ ଦେଢ଼ ଘଣ୍ଟା ପରେ କ୍ୟାମେରା ଧରିକି ପହଞ୍ଚିବେ । ତୋ ଫଟ ନେବେ ।

ନଖିଆ : ମୁଁ ଆଜି ପେଇଁ ସାମଲଘରୁ କାଲିଠୁଁ ମୂଲ ଆଣିଚି ।

ସରପଞ୍ଚ : ତାକୁ ତାଙ୍କ ମୂଲ ଫେରେଇ ଦେ ।

ନଖିଆ : ଅଉ ଅଛି ଯେ ଫେରେଇ ଦେବି ?

ସରପଞ୍ଚ : ତାକୁ କହିଦେବୁ କାଲିଯିବି । ଆଜି ମୋ ଘରକୁ ଭୁବନେଶ୍ୱରରୁ କୁଣିଆ ଆସିଚନ୍ତି ।

ନଖିଆ : ସିଏ କ'ଣ ମାନିବେ ?

ସରପଞ୍ଚ : ଅସଲ କଥାଟା ଏ ଯାଏ ତତେ କହି ନେଇଁ ?

ନଖିଆ : କ'ଣ କଉନା ?

ସରପଞ୍ଚ : ମୁଁ ତାଙ୍କୁ କଇଚି ସେମାନେ ତତେ ଟଙ୍କା ଦେବେ ?

ନଖିଆ : କେତେ ଦେବେ ?

ସରପଞ୍ଚ : ମୁଁ ତାଙ୍କୁ କଇଚି ତତେ ଦିଇଶ ଟଙ୍କା ଦେବେ ।

ନଖିଆ : ଦିଇଶ ? (ଆଶ୍ଚର୍ଯ୍ୟ ହେବା)

ସରପଞ୍ଚ : ସେମାନେ ମୋତେ ପଚିଶ ଟଙ୍କା ଦବାକୁ କହୁଥିଲେ । ମୁଁ କହିଲି – କ'ଣ ସିଏ ତମକୁ ଭିକ ମାଗୁଛି ? ନାଇଁ ଏତିକି ହବ ନେଇଁ । ପୁର ପାଆଁଶ ଟଙ୍କା ଦିଅ ।

ନଖିଆ : ପାଆଁଶ (ଆଖି ବଡ଼ ବଡ଼ କରି)

ସରପଞ୍ଚ : ପାଆଁଶ କ'ଣ ବେଶୀ ହେଇଗଲା ? ସେମାନେ ମଦ ପାଣିରେ କେତେ କୁଆଡ଼େ ଉଡ଼େଇ ଦଉଚନ୍ତି, ଦିଅନ୍ତୁ ଗୋଟେ ଗରିବ ଲୋକକୁ । ତାଙ୍କର ମୋର ଗଲିଲା ଝିଙ୍କା ଝିଙ୍କି । ସିଏ ଉଠିଲେ ଶହେକୁ । ମୁଁ ଖସିଲି ଖରିଶକୁ ।

ନଖିଆ : ଖରିଶ (ଆଶ୍ଚର୍ଯ୍ୟ)

ସରପଞ୍ଚ : ସେ ଆଉ ପାହାଚେ ଚଢ଼ିରହିଲେ ଦେଢ଼ଶରେ । ମୁଁ ଖସିଲି ତିନିଶକୁ । ସିଏ ଚଢ଼ିଲେ ଦିଇଶକୁ । ମୁଁ ଗଳି ହେଇଗଲି ।

ନଖିଆ ସିଏ ମତେ ଦିଇଶ ଟଙ୍କା ଦେବେ ?

ସରପଞ୍ଚ : ଆରେ ମୁଁ କ'ଣ ତତେ ମିଛ କହୁଚି ? ସେ ଟଙ୍କା ପାଇଁ ମୁଁ ଦାୟୀ ରହିଲି । ସିଏ ନ ଦେଲେ ତୁ ମୋଠୁଁ ନବୁ ।

ନଖିଆ : ତମେ ଦବ ?

ସରପଞ୍ଚ : ମୁଁ କଣ ହାତୁକୁ ଦଉଚି ? ମୁଁ ତାଙ୍କଠୁଁ ଆଣିବି ତତେ ଦେବି । ମୁଁ ଯାଉଚି, ଦେଖେ ସେମାନେ କୁଆଡ଼ିକି ଗଲେ । ତୁ ଘରେ ଥିବୁ, କୁଆଡ଼େ ଯାଇ ନଥିବୁ ।

ନଖିଆ : ହଉ ।

ସରପଞ୍ଚ : କିରେ ହଉ କ'ଣ ? କହ ହଁ ଥିବି ।

ନଖିଆ : ଥିବି ।

ସରପଞ୍ଚ : ମୁଁ ତା ହେଲେ ଯାଉଚି, ସିନେମାବାଲାଙ୍କୁ ପାଖରେ ଆଣିକି ଆସିବି ।

(ପ୍ରସ୍ଥାନ)

( ନଖିଆର ସ୍ତ୍ରୀ ମନ୍ଦି ତରବର ହୋଇ ନଖିଆ ପାଖକୁ ଆସିଲା । ମନ୍ଦିର ବୟସ ୨୮ ବର୍ଷ ପାଖା ପାଖି । ରଙ୍ଗ ସଫା । ପିନ୍ଧିଛି ଖଣ୍ଡେ ମଇଳା ଶାଢ଼ି । ପତଳା ଚେହେରା । )

ମନ୍ଦି ସରପଞ୍ଚ କ'ଣ କହୁ ଥିଲେ କି ?

ନଖିଆ : ଆମ ଘରେ ସିନେମା ହବ ?

ମନ୍ଦି ଆମ ଘରେ କ'ଣ ସିନେମା ହବ ?

ନଖିଆ ଭୁବନେଶ୍ୱରରୁ ଲୋକ ଆଇଚନ୍ତି । ଫଅଟ ଉଠିବ । ଆମ ଘରର ଫଅଟ ।

ମନ୍ଦି : ଫଅଟ ଉଠିବ ?

ନଖିଆ : ଫଅଟ ଉଠିବ । ତୋ ଫଅଟ, ମୋର ଫଅଟ ଆଉ ଆମ ଛୁଆଙ୍କର ଫଅଟ ଉଠିବ ।

ମନ୍ଦି : କି ଅଲିଆ କଥା ତମେ କହୁଚ ? କାଲିଠୁ ଘରେ ଭାତ ନାହିଁ । ଛୁଆଗୁଡ଼ା କାନ୍ଦି କାନ୍ଦି ରାତି ଅଧରେ ଭୋକରେ ଶୋଇଚନ୍ତି । ନିଦରୁ ଉଠିଲେ କ'ଣ ଖାଇବାକୁ ଆଉଣ୍ଡେଇ ହେବେ । ଏଣେ ପେଟ ପୋଡ଼ି ଯାଉଚି ଫଅଟ ଉଠିବ କ'ଣ ? ତମେ ଆଗେ ଯାଇ କୋଉଠୁ କ'ଣ ଦିଇଟା ଆଣିବ ।

ନଖିଆ : କାଲି ରାତି ଘଡ଼ିଏ ଯାଏଁ ତ ବୁଲି ବୁଲିକି ଆଇଲି କୋଉଠୁ କିଛି ପାଇଲି ନେଇଁ, ଏତେ ସକାଳୁ ଲୋକେ ବିଛଣାରୁ ଉଠି ନଥିବେ, କିଏ କ'ଣ ଦବ ?

ମନ୍ଦି : ତମେ ସେ ସରପଞ୍ଚ ବାବୁକୁ କହିଲ ନେଇଁ ।

ନଖିଆ : ଆଲୋ ମୁଁ କହିବି କ'ଣ ? ସିଏତ ଆଗତୁରୁ କହିଲେ ।

ମନ୍ଦି : କ'ଣ କହିଲେ ?

ନଖିଆ : ସିଏ କହିଲେ – ନଖିଆ ତୁ ଆଜି କାମକୁ ଯିବୁ ନଇଁ । ତୋର, ଆଉ ତୋ ଘରର ଫଅଟ ଉଠିବ । ତତେ ଟଙ୍କା ମିଳିବ ।

ମନ୍ଦି : ଟଙ୍କା ମିଳିବ ? (ଖୁସିହୋଇ) କେତେ ଟଙ୍କା ?

ନଖିଆ : ଦିଇଶ ଟଙ୍କା ।

ମନ୍ଦି : (ଆଶ୍ଚର୍ଯ୍ୟ ହୋଇ) ଦିଇଶ ଟଙ୍କା ?

ନଖିଆ : ସେମାନେ ଭାରି ବଡ଼ ଲୋକ । ଦିଇଶ ଟଙ୍କା ଆମକୁ ବଡନା, ତାଙ୍କୁ

କ'ଣ ? ତିରିଶ ଟଙ୍କା ତାଙ୍କ ଦିହର ମଳି ।

ମଦି : ତମେ ଆଗତୁରା କିଛି ଟଙ୍କା ମାଗିଲ ନେଇଁ ?

ନଖିଆ : କିଛି କାମ ହେଲ ନେଇଁ କେମିତି ମାଗି ଥାଆନ୍ତି ?

ମଦି : ଧନ୍ୟ ତମକୁ କଇବ ? କିହୋ କାଲିଠୁ ଘରେ ଖାଇବାକୁ ନାହିଁ । ବିଷ୍ଣୁର ଛୁଆଗୁଡା ଖାଡ଼ା ଖାଡ଼ା ଉପାସ । ସିଏ ତିରିଶ ଟଙ୍କା ଦେବେ ବୋଲି କଇଚନ୍ତି, ତମେ ତାଙ୍କୁ ଆଗତୁରା ଦଶ, କୋଡ଼ିଏଟା ଟଙ୍କା ମାଗି ପାରିଲ ନେଇଁ ?

ନଖିଆ ହଁ ତ ସରପଞ୍ଚକୁ ଦଶ, କୋଡ଼ିଏ ଟଙ୍କା ମାଗିଥିଲେ ହେଇ ଥାଆନ୍ତା ।

ମଦି : ତମେତ ମୁହଁ ଖୋଲି କାହାକୁ କିଛି କଇବ ନେଇଁ ତମକୁ ସିଏ କ'ଣ ଯାଚିକି ଦେଇ ଥାଆନ୍ତେ ?

ନଖିଆ : ତୁ ଠିକ କଇଚୁ । ମୁଁ ଯାଉଚି ସରପଞ୍ଚ ବାବୁଙ୍କୁ କଇବି ।
(ଗ୍ଲେଲି ଯାଉଥିଲା, ମଦି ପଛରୁ ଡାକିଲା)

ମଦି : ଟିକେ ଶୁଣ ।

ନଖିଆ : ପଛରୁ କାଇଁକି ଡାକିଲୁ, କ'ଣ ହେଲା ?

ମଦି : ଖାଲି ହାତରେ ନୋଉଟିବ ନେଇଁ । ଦଶଟଙ୍କା ନ ଦେଲେ ପାଞ୍ଚଟଙ୍କା ତିନିଟଙ୍କା ଯାହା ଦେବେ ଆଣିବ । କିଛି ନ ହେଲେ ମୁଡି ତିଲଟା କିଣି ଦେଲେ ଛୁଆଏ ମୁଠାଏ ମୁଠାଏ ପାଟିରେ ପକେଇ ପାଣି ମୁନ୍ଦେ ମୁନ୍ଦେ ପିଇ ଦେବେ ।

ନଖିଆ : ହଁ ମୁଁ ଯେମିତି ହେଲେ କିଛି ଆଣିବି । ତୁ ଛୁଆଙ୍କୁ ନିଦରୁ ଉଠା । ସେମାନେ ଦାନ୍ତ ପତର ଘସି ପକାନ୍ତୁ । ତୁ ବି ମୁଣ୍ଡ ଫୁଣ୍ଡ କୁଣ୍ଡା । ସେମାନେ ଘଡ଼ିକ ପରେ ଫଥଟ ଉଠେଇବାକୁ ଆସିବେ ।

ମଦି : ନାଇଁ ମୁଁ ମୋର ଫଥଟ ଉଠେଇବି ନେଇଁ ।

ନଖିଆ : କାଇଁକି, କ'ଣ ହେଲା ? ଏମିତି ରାଗି ଯାଉଚୁ କାହିଁକି ?

ମଦି : ରାଗିବି କାଇଁକି ?

ନଖିଆ : ଆଉ କାହିଁକି ଫଥଟ ଉଠେଇବୁ ନାହିଁ ?

ମଦି : ଏମିତି ସାତସିଆଁ ଚିରା ଲୁଗା ପିନ୍ଧିକି ମୁଁ ମୋର ଫଥଟ ଉଠେଇବି ନେଇଁ ।

ନଖିଆ : ତୁ ଫଅଟ ଉଠେଇବୁ ବୋଲି ମୁଁ ଏଇନେ ନୂଆ ନୁଗା କୋଉଠୁ ଆଣିବି ?

ମନ୍ଦି : ମତେ ରଗାନା କର ଦଉଚି । ନୂଆ ନୁଗା ଆଜିଯାଏ କେବେ କରିଚ ? ଭୁଆଷୁଣୀ ଥିଲବେଳେତ ଦେଇନା, ଆଉ ଏଇନା ଦବ ? ତମ ମୁହଁକୁ ନାକ ସରମ ଥିଲେ ତମେ ଏମିତି କଥା କଅନ୍ତ ନେଇଁ ।

ନଖିଆ : ଜାଣିଚୁତ ନୂଆ ନୁଗା ଦବାକୁ ମୋ ହାତରେ ଧନ ନାହିଁ । ସେଇ କଥାକୁ ଏତେଥର ଏଡ଼େ ହାନ୍ତେ ଦୋହଗେଇଚୁ କାଇଁକି ?

ମନ୍ଦି : ନୂଆ ନୁଗା କଥା କିଏ କଇଲା ? ତମେ ଆଗ କଇଲ ନା ମୁଁ ଆଗ କଇଲି ?

ନଖିଆ : ତୁ ଫଅଟ ଉଠେଇବୁ ନଇଁ ବୋଲି କାହିଁକି କଇଲୁ ?

ମନ୍ଦି : ତମର କି ବୁଦ୍ଧି ଅକଲ କେଇ ଜାଣି । ନିଜ ପିଲା ମାଇପଙ୍କ କାଙ୍ଗାଳିଆ ବେଶ ନେଇ ଦାଣ୍ଡରେ ଦେଖେଇବାକୁ କଉଚ ? ତମେ ନାହିଁ କରି ଦିଅ । ଆମର ଫଅଟ ଉଠିବ ନେଇଁ ।

ନଖିଆ : ହାତକୁ ହ ତ ଦିଗର ଟଙ୍କା କିଏ ଛାଡ଼େ ? ତୁ ନଉଠା, ଆମେ ଆମର ଉଠେଇବୁ ।

ମନ୍ଦି : ଏମିତି ଅଭେକା, ଅବରଗ ହେଇ ମୋ ଛୁଆ ପିଲା ଫଅଟ ଉଠେଇବେ ନେଇଁ । କାହାରି ଭଲ ଜାମା ଖଣ୍ଡେ କି ଭଲ ପେଣ୍ଟ୍ ଖଣ୍ଡେ ନାହିଁ । ଦିହ ମୁଣ୍ଡ ନୁଖୁର । ଚିର ମିରକି ଯୋଉ ଖଣ୍ଡେ ଅଧେ ଜାମା ପେଣ୍ଟ ଅଛି ସେ ସବୁ ମଣିଆ, କୋତର ।

ନଖିଆ : ସବୁ କଥାରେ ଫଟଙ୍ଗ କାଢିବା ତୋର ଗୋଟେ ଖୋଇ ।

ମନ୍ଦି : ମୁଁ ଭଲକଥା କହିଲେ ତମକୁ ଗନ୍ଧାଏ । ତମେ ଅଣେ ଦି ଅଣାର ସୋଢ଼ା ଆଣନା ମୁଁ ଛୁଆଙ୍କ ଜାମା ପେଣ୍ଟ୍ ଆଜି କାଚି ଦେବି, କାଲିକି ଫଅଟ ଉଠିବ ।

ନଖିଆ : ସେ ମାଇପି ବୁଦ୍ଧି ରଖି ଦେଇଥା । ଆମେ ଏମିତି ଗୋଡ଼ ନଧୋଇଲେ ସେମାନେ ଯଦି ଆଉ କାହା ଫଅଟ ନେଇଯିବେ ସେଇଠୁ ?

ମନ୍ଦି : ତା ବୋଲି ଏମିତି ମଣିଆ, କୋତର, ଚିର ନୁଗାରେ କିଏ ଫଅଟ ଉଠାଏ ?

ନଣିଆ : ସେମାନେ ଟଙ୍କା ଦେଲେ ମୁଁ ତୋ ପେଇଁ ମାଳହାଟରୁ ନୂଆ ବେଡ଼ାଣ ଖଣ୍ଡେ କିଣି ଆଣିବି ।

ମଦି : ଛୁଆଙ୍କ ପେଇଁ ହଳେ ହଳେ ପେଣ୍ଟ ଜାମା ନ ହେଲେ ପିଲଗୁଡ଼ାକ କାଙ୍ଗାଳିଆ ପରି ଦିଶୁଚନ୍ତି ।

ନଣିଆ : ହଉ ଆଣିବା, ସେମାନେ ପଇସା ଦିଅନ୍ତୁ ।

ମଦି : ଏଇନା ଏ ଚିରା ମିରା ପିନ୍ଧି କିଏ କେମିତି ପଅଟ ଉଠିବ ? କାହା ମନ ହବ ?

ନଣିଆ : ଆମେତ ପଇସା ଦେଇକି ପଅଟ ଉଠଉନା, ସେମାନେ ଆମ ପଅଟ ଉଠେଇ ଆମକୁ ପଇସା ଦେବେ । ଯାହା ଯେମିତି ହଉଚି ହଉ । ସେମାନେ ପଇସା ଦେଲେ ସମସ୍ତଙ୍କର ଲୁଗା ପଟା କିଣି ଆଣିବା । ସେଇଆକୁ ପିନ୍ଧି ଭଲ ପଅଟ ଉଠେଇବା ।

ମଦି : ଆଉ ଗୋଟେ କାମ କଲେ ହୁଅନ୍ତା ।

ନଣିଆ : କି କାମ ?

ମଦି : ଛୁଆଙ୍କ ଜାମା ପେଣ୍ଟ ଆଉ କାହା ଛୁଆଙ୍କ ଠଉଁ ମାଗି ଆଣିକି ଚଳେଇ ଦେଲେ ହୁଅନ୍ତା ।

ନଣିଆ : ସତ କଥାତ ? ଏଇ ଛୋଟ କଥାଟା ମୋ ମୁଣ୍ଡରେ ପଶୁ ନଥିଲା । ଭେଜିଲା ମୁଣ୍ଡକୁ କିଛି ଦୁଶେ ନେଇଁ ।

ମଦି : ହେଇଟି ତମେ ଗୋଟେ କାମ କର ।

ନଣିଆ : କି କାମ ?

ମଦି : ତମେ କ'ଣ ଏମିତି ଖାଲି ଦିହଟାରେ ପଅଟ ଉଠିବ ?

ନଣିଆ : ମୋର ସେମିତି ଚଳିବ ।

ମଦି : ନାଇଁ ତମେ ସେ ମଦନାଠୁ ନୁଗା, କାମିଜି ମାଗି ଆଣ ।

ନଣିଆ : ଆମ ଏଇ ବରଜା ଘରିଯାଉ ଭଲ ନୁଗା ନାହିଁ ?

ମଦି : କାଇଁକି କ'ଣ ହେଲା ?

ନଣିଆ : ଯାଉ ନଉଁ ତା ନୁଗାରୁ ଗୋଟେ ମାଗି ଆଣିବୁ, ସେଇଟାକୁ ପିନ୍ଧ ପଅଟ ଉଠେଇବୁ ଆଉ ପଅଟ ଉଠି ସାଇଲେ ଫେରେଇ ଦବୁ ।

ମଦି : ନାଇଁ ମୁଁ ମୋର କାହାଠୁ ମାଗିକି ଆଣିବି ନେଇଁ ।

ନଖିଆ : ଏମିତି ହେଲେ ହବ ? ସବୁ କଥା ଚଳେଇ ନବାକୁ ହବ ।

ମନ୍ଦି : ହଉ ହେଲା । ତମେ ଆଉଲା ବେଳକୁ ମଦନାଠୁ ନୁଗା, କମିଜି ମାଟିକି ଆଣିବ ।

ଢଳିଆ : (ବାହାରେ ଥାଇ) ନଖିଆ ! ନଖିଆ !

ନଖିଆ : (ବ୍ୟସ୍ତ ହୋଇ ଇତଃସ୍ତତ ହେଇ) ହେଇତ ସାମୁଲଘର କାମକୁ ଯିବାକୁ ଢଳିଆ ଡାକି ଆଇଲାଣି ? କ'ଣ କରିବି ? ଯେତେ କଇଲେ ସିଏ କ'ଣ ଶୁଣିବ ?

ମନ୍ଦି : କଇଦବ ମୋ ଦିହ ଭଲ ନାଗୁ ନେଇଁ । ଅସକତିଆ ନାଗୁଚି । ମୁଁ ଆଜି କାମକୁ ଯାଇ ପାରିବି ନେଇଁ । ଦିହ ଭଲ ହେଲେ କାଲି ଯିବି ।

ନଖିଆ : ନାଇଁ, ସେ କଥା ସିଏ ମୋଟେ ଶୁଣିବ ନେଇଁ । ମୁଁ ଘର ଭିତରେ ନୁଚୁଚି । ତୁ କଇଦବୁ ସିଏ ଘରେ ନାହାନ୍ତି ।
(ନଖିଆ ଘର ଭିତରକୁ ପଶିଗଲା)

ଢଳିଆ : ନଖିଆ ! କିରେ ତତେ କ'ଣ ଶୁବୁ ନେଇଁ ?
(ଢଳିଆ ପଶି ଆସିଲା) ନଖିଆ କାଇଁ ?

ମନ୍ଦ : (ଓଢ଼ଣା ଦେଇ ଗୋଟେ କଡ଼କୁ ଆଡ଼େଇ ହେଇ ଠିଆ ହୋଇ) ସିଏ ଘରେ ନାହାନ୍ତି ।

ଢଳିଆ : ଘରେ ନାହିଁ ? ଏତେ ସକାଳୁ ଆଉ କୁଆଡ଼େ ଗଲା ? ଆଜି ପଗ ବାବୁଘର କାମକୁ ଯିବ ?

ମନ୍ଦି : ସିଏ ଆଇଲେ ମୁଁ ତାକୁ କଇ ଦେବି ।

ଢଳିଆ : ସିଏ କେତେବେଳେ ନାଇଁ କେତେବେଳେ ଆସିବ, କାମ କେମିତି ହବ ? ସିଏ ଆଜି ପେଇଁ ଆଉ କାହାଠୁ ମୂଲ ଆଣି ଥିଲାକି ?

ମନ୍ଦି : ନାଇଁତ ।

ଢଳିଆ : ଗାଆଁ ଭିତରେ କୋଉଠିକି ଯାଇଚି କି ?

ମନ୍ଦି : ସେ କଥା ମୁଁ କଇ ପାରିବି ନେଇଁ ।

ଢଳିଆ : (ରାଗିଗଲା) ଶଳା ମୂଲ ପାଇଁଲା ବେଳକୁ ହକ ହକ, କାମକୁ ଯିବାର ନାଆଁ ନାହିଁ । ଏଗୁଡ଼ାକୁ ଆଗିଆ ମୂଲ ଦେଲେ ବଡ଼ ହଟ ହଟା । ଗୋଡ଼େ ଗୋଡ଼େ ନ ଲାଗିଲେ ପାରି ହବ ନେଇଁ । ସିଏ ଆଇଲେ ତାକୁ କହିଦବ ନେଇକି ମୂଲ ଫେରେଇ ଦେଇ ଆସିବ । (ଯୋଉ ଯାଉ ଫେରି

ଆସି) ଆସିବା ସାଙ୍ଗେ ସାଙ୍ଗେ ଯିବକୁ କହିବ । ଏତେ ସକାଳୁ କୁଆଡ଼େ ଛୁ ମାରି ଦେଲଣି । ଆଉ କେତେ ବେଳୁ ଅଛ ଥାଆନ୍ତି ? ବାବୁ ନାହିଁ କରୁଥିଲେଟି ମୁଁ ତାଙ୍କ କଥା ନ ମାନି ଅଗିଲ ମୂଲ ଦେଲି । ଏଗୁଡ଼ାଙ୍କୁ ଆଉ ଦୟା ମାୟା ନାହିଁ । ଯୋଉ ପତରରେ ଖାଇବେ ସେଇ ପତରରେ ହଗିବେ । ହଉ ମୁଁ ଯାଉଚି । ନଖିଆ ଆସିବା ସାଙ୍ଗେ ସାଙ୍ଗେ ପଠେଇବ ।

ମନ୍ଦି : ହଉ ସିଏ ଆଇଲେ ମୁଁ ପଠେଇବି ।

କଳିଆ : କଇବ ସିଏ ବାରବାରକି କଇ ଯାଇଚନ୍ତି କାମ ମାଡ଼ କରିବ ନେଇଁ । (ପ୍ରସ୍ଥାନ)

[ନଖିଆ ଲୁଚିବା ସ୍ଥାନରୁ ଅସ୍ତେ ଅସ୍ତେ ବାହାରିଲା । ମନ୍ଦି ତାକୁ ହାତରେ ଠାରିଲା – ଆଉ ଟିକେ ସମୟ ସେଇ ଘର ଭିତରେ ରୁହ, ସେ ଲୋକ ପୂର ଯାଇ ନାହିଁ । ମନ୍ଦି କଳିଆର ଗତିପଥକୁ ଗୁହିଁ ରହିଲା ।]

ନଖିଆ : [କିଛି ସମୟ ପରେ ଧୀରେ ଧୀରେ ପଦାକୁ ଆସିଲା] ଗଲାଚ ?

ମନ୍ଦି : (କଳିଆର ଗତିପଥକୁ ସେମିତି ଗୁହିଁ) ହଁ, ଗଲା ।

ନଖିଆ : ଗୋଟେ ଗୁହ ଗଲା । ତୁ ଛୁଆଙ୍କୁ ନିଦରୁ ଉଠା । ମୁଁ ସରପଞ୍ଚଙ୍କ ପାଖରୁ ଆସେ ।

ମନ୍ଦି : ଆଇଲା ବେଳେ ମଦନାଠୁ ତା ନୁଗା, କମିଜି ମାଗିକି ଆଣିବ ।

ନଖିଆ : ତୁ ବରଜା ଘରୁ ଭଲ ବେଡ଼ାଣ ଖଣ୍ଡେ ଆଣିଥିବୁ ।

ମନ୍ଦି : ସେମାନେ କେତେବେଳେ ଆସିବେ କି ?

ନଖିଆ : କଇକିତ ଗଲେ ଆଉ ଦି' ଘଡ଼ି ପରେ ଆସିବେ ବୋଲି । ସିଏ ଯେତେବେଳେ ଆଉଚନ୍ତି ଆସନ୍ତୁ । ତମେ ସବୁ ସଜ ହେଇ ପଡ଼ । ମୁଁ ଆଉଚି ।

ମନ୍ଦି : ସରପଞ୍ଚଙ୍କ ଠଉଁ ଯେମିତି ହେଲେ ପାଞ୍ଚ ଦଶ ଟଙ୍କା ଆଣିବ ।

ନଖିଆ : ହଁ ହଁ । [ନଖିଆ ବାହାରକୁ ଗଲା । ମନ୍ଦି ଦରମଜା ବାସନକୁ ଆଉ ଟିକେ ଧୋଇଧାଇ ଘରକୁ ନେବାବେଳେ ପିଲମାନଙ୍କୁ ଡାକ ପକାଇଲା ।]

ମନ୍ଦି : ଏ ସେବ ! ଟିମା ! ଏତେ ବେଳଯାଏଁ କ'ଣ ଶୋଇଚ ଉଠ ଉଠ ଖରା ପଡ଼ିଲଣି । ସେବ, ଟିମା !

[ପିଲଙ୍କୁ ଡାକି ଡାକି ଘର ଭିତରକୁ ପଶିଲା]

# ଦ୍ୱିତୀୟ ଅଙ୍କ

[ ନଣିଆର ଘେର ମାଟି ଝାଟି ଘର । ସମୟ ସକାଳ ୯ଟା ଫଟ ଉଠିବା ପାଇଁ ନଣିଆର ପରିବାର ଗାଆଁରୁ ମାଗି ଯାଚି ଲୁଗା ପଟା ଆଣି ପିନ୍ଧା ପିନ୍ଧ କରି ସଜ ହେଉଛନ୍ତି । ମନ୍ଦି ତାର ଝିଅ ସେବତୀର ମୁଣ୍ଡ କୁଣ୍ଡେଇ ଦେଇ ରିବନ ବାନ୍ଧି ଦେଉଛି । ଟିମା ଆରିସିରେ ମୁହଁ ଦେଖୁଛି । ଗୋଟାଏ କାମିଜର ଚିର ଅଂଶକୁ ସିଲାଇ କରୁଛି ନଣିଆ । ଟିମାର ବୟସ ୮ବର୍ଷ ଓ ସେବତୀର ବୟସ ୧୦ବର୍ଷ । ]

ଟିମା : ବୋଉ ! ମତେ ଟିକେ ପାନିଆଁଟା ଦେଲୁ ।

ମନ୍ଦି : ତୁ ପାନିଆଟା ନେଇ କଣ କରିବୁ ? ମୁଁ ଦେଇର ମୁଣ୍ଡ କୁଣ୍ଡେଇ ଦେଇ ସାରେ, ତୋ ମୁଣ୍ଡ କୁଣ୍ଡେଇ ଦେବି ।

ସେବତୀ : ଟିମା ଏଟିମା !

ଟିମା : କାହିଁକି ଏମିତି ରଡ଼ି ଛାଡୁଚୁ ?

ସେବତୀ : ମତେ ଟିକେ ଆରିସିଟା ଦେ ।

ଟିମା : ବୋଉତ ତୋ ମୁଣ୍ଡ କୁଣ୍ଡେଇ ଦଉଚି ତୁ ଆରିସିଟା ନେଇ କ'ଣ କରିବୁ ? (ଅଙ୍ଗୁଠିରେ ମୁଣ୍ଡ କୁଣ୍ଡେଇ ଆରିସିରେ ଦେଖିଲା)

ସେବତୀ : ବୋଉତ ପାନିଆଁରେ ମୁଣ୍ଡ କୁଣ୍ଡେଇ ଦଉଚି, ତୁ ଆରସିଟା କାହିଁକି ଧରିଚୁ ? ସେ ପାତିଆ ମୁହଁକୁ ଏତେ କାଇଁକି ଦେଖୁଚୁ ?

ଟିମା : ତୋ ମୁହଁଟାତ ଘରି ବାଘ । ତୋର ସେ ଚେପେଟା ନାକକୁ ଆରିସିରେ ଦେଖିବାକୁ ଏମିତି ଉଛନ୍ନ ହୋଉଚୁ କାଇଁକି ?

ସେବତୀ : ବୋଉ ! ଦେଖିଲୁ ତୋ ପୁଅ ମତେ କେମିତି କଉଚି ଚେପଟା ନାକି । ମୋ ନାକ କଣ ଚେପଟା ?

ମନ୍ଦି : ତୁ ସେ ଫିସାଦିଆଟା କଥା କାଇଁକି ଶୁଣୁଚୁ ? ମୋ ଝିଅର ନାକତ ଖଣ୍ଡାଧାର ପରି ଠିଆ, ଚେପଟା ହବ କାଇଁକି ?

ଟିମା : ଆଉ ମୋ ମୁହଁ କଣ ପାତିଆ ?

ମନ୍ଦି : ତା କଥାରୁ ତୁ କ'ଣ ପାଇବୁ ? ତୋ ମୁହଁତ ଖଡ଼ି ଗୋଟକି ପରି ଗୋଲ୍ । (ସେବ ଉଠି ଯାଇଁ ଟିମା ହାତରୁ ଆରିସିଟା ଛଡ଼େଇଲା ।

ଆରିସିଟାକୁ ଧରି ଦୁହେଁ ଟଣା ଟଣି ହେଲେ । ନଖିଆ କାମିଜି ସିଲେଇ କରୁ କରୁ କଟି ନ ଲଗିବା ପାଇଁ ଆକଟ କଲା ।)

ନଖିଆ : କିରେ ଏମିତି କଳି ନାଗୁଚ କ'ଣ ? ଆରେ ଗ୍ଲହ ।

ମନ୍ଦି : ଟିମା, ଏ ଟିମା । ଆରେ ଏମିତି କ'ଣ ହଉଚୁ ? ସେବ ! ଶୁଣ ଶୁଣ ।

[ବୋପା ମାଆଙ୍କ କଥା ନ ମାନି ଦୁହେଁ ଆରିସିଟାକୁ ଧରି ଟଣା ଟଣି କରୁ କରୁ ତଳେ ପଡ଼ି ଆରିସିଟା ଭାଙ୍ଗିଗଲା ।]

ମନ୍ଦି : ଗଲା ଭାଙ୍ଗିଗଲା ? ଦିଇଟା ଯାଙ୍କ ପାଇଁକି ଏମିତି ଉତ୍ପାତେଇ ହଉଚ ?

ନଖିଆ : (କାମିଜି ସିଲେଇ ଛାଡ଼ି ଉଠି ଆସିଲା) ଏ ବଦମାସ ପିଲା କିଛି ରଖିବେ ନେଇଁ । ଦେଖୁଥା, ଏଥର ଆରିସିରେ ମୁହଁ ଦେଖୁଥା ।

ମନ୍ଦି : ଅତି ଦୋଶାସନିଆଁ ହେଇ ଯାଉଚନ୍ତି । ଦିଅମ ଦିଇଟା ତାଙ୍କ ପିଠିରେ ।

ନଖିଆ : (ଟିମାକୁ) ଆରିସି ନହେଲେ ଏ ଗୋଢା ମୁହାଁର ଚଳୁ ନେଇଁ ।

[ଟିମା ଓ ସେବତୀ ଦୁହେଁ ଅପରାଧୀ ପରି ଭୟରେ ମୁହଁ ତଳକୁ କରି ଠିଆ ହୋଇଥିଲେ ।]

ମନ୍ଦି : ଏକୁଟିଆ କ'ଣ ତାର ଦୋଷ ? ଏ ଝିଅ ଖଣ୍ଡକ କ'ଣ କଅମ କି ? ମୁଁ ନାହିଁ କରୁଚି, ଯାଇଁକି ତା ସାଙ୍ଗରେ ଛଡ଼ା ମଡ଼ା କରୁଚି । ତାକୁ କଅଁଳେଇ କି କଇଥିଲେ ସିଏ କ'ଣ ଦେଇ ନଥାନ୍ତା ?

ନଖିଆ : ଆରିସିଟା ଥିଲା ଅଡୁଆ ହଉଥିଲା, ଯାଉ ସେଟା ।

[ପୁଣି ଫେରିଯାଇ କାମିଜି ସିଲେଇ କରିଚି]

ମନ୍ଦି : (ସେବତୀ ପ୍ରତି) ଏମିତି ମୁହଁ ଶୁଖେଇକି ଠିଆ ହେଲେ କ'ଣ ହବ ? ଏଡ଼େ ଝିଅଟେଇ ହେଲୁଣୁ ତୋର ବୁଦ୍ଧି ଅକଲ କିଛି ନାହିଁ ? ଛୁଆଟା ସାଙ୍ଗରେ ଯୁଦ୍ଧ କରୁଚୁ । ନେ, ସେ ଭଙ୍ଗା କାଚ ଗୁଣ୍ଡକ ଗୋଟେଇ ନେ, ପଦାରେ ପକେଇ ଦେ ।

[ସେବତୀ କାନ୍ଦ କାନ୍ଦ ହୋଇ ଭଙ୍ଗା କାଚ ଗୋଟେଇଲା । ଟିମା ମନ ଦୁଃଖରେ ସେଇ ଭଙ୍ଗା କାଚଗୁଡ଼ିକୁ ଅନାଇଁ ଥିଲା । ]

ମନ୍ଦି : ଟିମା ଦେ, ତୋ ପେଣ୍ଟଟା ଦେ, ଗୋତାମ ନଗେଇ ଦେବି ।

ଟିମା : କେମିତି ଦେବି ?

ମନ୍ଦି : କେମିତି ଦବୁ କ'ଣ ? ନଙ୍ଗଳା ହେଇକିନା ପେଣ୍ଟଟା ଦେ ।

ଟିମା : ନାଇଁ ମୋର, ମୁଁ ପିନ୍ଧି ଚି ତୁ ସେମିତି ନଗେଇ ଦେ ।

ମନ୍ଦି : ଇଏ କୋଉ ଅଭିଧାନ କଥା ? ମତେ ସେମିତି ଆସିବ ନେଇଁ । ତୁ ତୋର ସେମିତି ମୋଡ଼ିକି ପିନ୍ଧିଥା ।

ଟିମା : ନାଇଁ ପଅଟରେ ଏଟା ବାଗ ଦିଶିବ ନେଇଁ ।

ମନ୍ଦି : ପେଣ୍ଟଟା ଦଉନଇଁ ମୁଁ ଗୋତାମ ନଗେଇ ଦେବି ।

ଟିମା : ନାଇଁ ମୁଁ ଘର ଭିତରକୁ ଯାଉଚି । ପେଣ୍ଟଟା ପଦାକୁ ପକେଇ ଦେବି । ତୁ ଗୋତାମ ଲଗେଇ ସାରି ମୋ ପାଖକୁ ପକେଇ ଦବୁ ।

ମନ୍ଦି : ଛୁଆ ବକଟେ କେତେ ଫଟଙ୍ଗ କାଢୁଚି । ହଉ ଯା ।

(ଟିମା ଘର ଭିତରକୁ ଗଲା । ଝରକା ବାଟେ ହାତ ଗଳେଇ ପ୍ୟାଣ୍ଟଟା ପଦାକୁ ପକେଇ ଦେଲା । ମନ୍ଦି ପ୍ୟାଣ୍ଟଟା ଆଣିବା ବେଳକୁ ଦେଖିଲା ସେବତୀ ଭଙ୍ଗା କାଚରେ ଏକ ଧ୍ୟାନରେ ମୁହଁ ଦେଖୁଛି । ହସୁଛି, ମୁହଁର ବିଭିନ୍ନ ପୋଜ୍ କରୁଛି ।)

ମନ୍ଦି : କିଲୋ ତୁ ଏତେ ଝିଅଟେ ହେଲୁଣୁ ଏତିକି ଜାଣି ନଇଁ ? ଭଙ୍ଗା କାଚରେ ମୁହଁ ଦେଖିଲେ ଅଶୁଭ । (ହାତରୁ ଭଙ୍ଗାକାଚକୁ ଛଡ଼ାଇ ନେଇ) ଦେ ସେଗୁଡ଼ାକ ମୁଁ ପକେଇ ଦିଏ ।

ସେବତୀ : ନାଇଁ ମୁଁ ଭଲକି ଦେଖି ସାରି ନେଇଁ ।

ମନ୍ଦି : ଏତେ କ'ଣ ଦେଖୁଚୁ ? ସବୁ ଠିକ୍ ଅଛି । ନେ କାଚକୁ ବାରିପଟେ ପକେଇ ଦବୁ ।

[ସେବତୀ ଭଙ୍ଗା କାଚ ଧରି ଅନିଚ୍ଛା ସତ୍ତ୍ୱେ ଗ୍ଲଲିଗଲା । ମନ୍ଦି ନଖିଆ ପାଖକୁ ଗଲା] କ'ଣ ତମର ସିଲେଇ ସରଲା ?

ନଖିଆ : ନାଇଁମ, ସୂତାଟା ଛୁଞ୍ଚିରୁ ଖସିଗଲା । ଆଉ ପୁରେଇ ହଉ ନେଇଁ ।

ମନ୍ଦି : ନେ, ତୁ ସିଲେଇ କରିଦେ ।

[ମନ୍ଦି ନଖିଆଠାରୁ ଛୁଞ୍ଚି ସୂତା ନେଲା]

ମନ୍ଦି : ରହୁ ! ମୁଁ ଆଗ ତା ପେଣ୍ଟରେ ଗୋତାମ ନଗେଇ ଦିଏଁ ।

[ଏହି ସମୟରେ ପଶି ଆସିଛି ଦୋକାନୀ ନଟିଆ । ହାତରେ ଗୋଟିଏ ବାକି ଆଦାୟ ଖାତା । କାନରେ ପେନ୍‌ସିଲ୍ । ଆଖିରେ ଗ୍ଲଳିଶା ଚଷମା । ]

ନଟିଆ : ନଖିଆ ! ନଖିଆ ଘରେ ଅଛୁକି ?

[ମେଢି ଆଡ଼ ହୋଇ ଭିତରକୁ ଚାଲିଗଲା]

ନଖିଆ : କୁଆଡ଼େ ନଟିଆଭାଇ ?

ନଟିଆ : କିରେ କୁଆଡ଼େ କ'ଣ ? ତତେଯା ବାରବାରକି ତାଗିଦି କରିଥିଲି ଦୋକାନ ବାକି ତୁଟେଇ ଦବାକୁ । ଆଠଦିନ ହେଲା ମୁଁ ଅନେଇଚି ତୋର ଦେଖାନାହିଁ ।

ନଖିଆ : (ଆସନ ଖଣ୍ଡେ ଆଣି ପିଣ୍ଡାରେ ପକାଇ) ମୁଁ କ'ଣ ବୁଡ଼େଇ ଦବା ଲୋକ ହେଇଚି ଯେ ବୁଡ଼େଇ ଦେବି ।

ନଟିଆ : (ଆସନରେ ବସି) ତୁ ପତରରେ ପଡ଼ଲରେ ଗଲେ ମୁଁ ଶିରରେ ଶିରରେ ଯିବି । ହ୍ୟାଲିପୋ ଆଜି କାଲି କାହାକୁ ବିଶ୍ୱାସ ନାହିଁ ।

ନଖିଆ : କ'ଣ ହେଲା ? ଏମିତି ରାଗୁଚ କାହିଁକି ?

ନଟିଆ : ରାଗିବି ନେଇଁ ? ମୁଁ ବାକି ପଇସା ମାଗିଲି ବୋଲି ତୁ ହ୍ୟାଲିପୋ ଆଠ ଦିନ ହେଲା ମତେ ନୁଚି ନୁଚି ବୁଲୁଚୁ ।

ନଖିଆ : ନୁଚିବି କାହିଁକି ?

ନଟିଆ : ନୁଚି ନଇଁ ? ତା ହେଲେ ଆଠ ଦିନ ହେଲା ମୋ ଦୋକାନକୁ ଯାଇ ନଇଁ କାହିଁକି ?

ନଖିଆ : ତମେ ତ ନାହିଁ କଲ ବାକିଆ ନ ତୁଟେଇଲେ ଆଉ ବାକି ଦବ ନେଇଁ ଆଉ ଯାଇ ଥାଆନ୍ତି କାହିଁକି ?

ନଟିଆ : ତା ବୋଲି ତୁ ସଟ୍‌କିନି ସେ ନିଧିଆ ଦୋକାନକୁ ଚାଲିଗଲୁ ? ସେଇଟା ଗୋଟେ ପରମା ବୋଲି ଜାଣିଚୁନା ନାଇଁ ? ସେଇଟା ଶଳା ବାଉଁଆ ଟାଏ ପରା ।

ନଖିଆ : ବାଉଁଆ ? ନାଇଁତ ସିଏ ଡାହାଣ ହାତରେ ସବୁ କାମ କରେ ।

ନଟିଆ : (ହସିଲା) ତୁ ତା' ବାଉଆଁଗିରି ଜାଣିନଇଁ । ତୋର ଯଦି ଦଶଟଙ୍କା ବାକି ହେଇଥିବ ସିଏ ଆଗ୍ରେକିନା ତା ବାଆଁରେ ଆଉ ଗୋଟେ ଏକ ଲେଖି ତାକୁ ୧୧୦ ଟଙ୍କା କରିଦବ ।

ନଖିଆ : ମୁଁ କ'ଣ ଏତେ କଥା ଜାଣିଚି ।

ନଟିଆ : ହଉ ସେ କଥା ଛାଡ଼ । ବାକି ଟଙ୍କା ଆଣ । ହଁ, ତୋର କେତେ ଟଙ୍କା ? (ହିସାବ ଖାତା ବାହାର କରି ଦେଖିଲା) ପଚସରା ଟଙ୍କା ପଞ୍ଚାବନ ପଇସା ।

ନଖିଆ : ଏତେ ଦିନତ ଗଲଣି, ଆଜି ଦିନଟା ସବୁରୁ କର । କାଲି ତମ ପଇସା ଦେଇ ଦେବି ।

ନଟିଆ : କାହିଁକି ଏହିନେ ଦଉ ନହିଁ, କାଲି ସକାଳୁ କୋଉଠୁ ଆଣିବୁ ?

ନଖିଆ : ଏଇନେ କୋଉଠୁ ଆଣିବି ? ତମକୁ ନୁଚେଇବି କ'ଣ କାଲିଠୁ ମୋ ଘରେ ଭାତ ନାହିଁ ।

ନଟିଆ : ତୋ ଘରେ ତ ଅଧାଦିନ ରନ୍ଧା ବଢ଼ା ନାହିଁ । ତା ବୋଲି ମୋ ବାକି କ'ଣ ଭଡ଼ାଯିବ ?

ନଖିଆ : ମୁଁ ସେ କଥା କେତେବେଳେ କଇଛି ? ଏତେ ,ଦିନତ ସମାଳିଲଣି ଆଉ ଗୋଟେ ଦିନ ସମାଳ ।

ନଟିଆ : ତୁ କାଲି କୋଉଠୁ ଆଣିବୁ ?

ନଖିଆ : ମତେ ଆଜି ଟଙ୍କା ମିଳିବ ।

ନଟିଆ : ତତେ ଟଙ୍କା ମିଳିବ ? କିରେ ତତେ ପୁଣି ଟଙ୍କା କୋଉଠୁ ମିଳିବ ? ତୁ କ'ଣ ବେଙ୍କ୍ ଲୁନ୍ କରିଚୁକି ?

ନଖିଆ : ନାହିଁ ...

ନଟିଆ : ଆଉ ତା ହେଲେ ଟଙ୍କା କୋଉଠୁ ମିଳିବ ?

ନଖିଆ : ଭୁବନିଶରରୁ ଗୋଟେ ସିନେମା ଦଳ ଆଇଛନ୍ତି ।

ନଟିଆ : ଆମ ଗାଆଁ କୁବ ଘରେ ଯୋଉ ଦଳକ ଅଛନ୍ତି ?

ନଖିଆ : ହଁ । ସେଇ ଦଳକ ।

ନଟିଆ : କିରେ ତତେ ସେମାନେ କାହିଁକି ଟଙ୍କା ଦେବେ ?

ନଖିଆ : ସେମାନେ ମୋ ଘର ଉପରେ ଗୋଟେ ସିନେମା କରିବେ ।

ନଟିଆ : ସିନେମା କରିବେ ? ହଉ ଠିକ୍ ଅଛି, ମୁଁ ଯାଉଚି । ତୁ କାଲି ସକାଳୁ ନେଇ ଦେଇ ଆସିବୁ ।

ନଖିଆ : ନିଶ୍ଚେ ନେଇ ଦେଇ ଆସିବି ।

ନଟିଆ : ମୁଁ କଟକ ଯିବା ଆଗରୁ ଦେଇ ଆସିବୁ ?

ନଖିଆ : ହଁ [ନଟିଆର ପ୍ରସ୍ଥାନ]

ମନ୍ଦି : [ଘର ଭିତରୁ ବାହାରି ଆସିଛି । ହାତରେ ଧରିଛି ସିଲେଇ କରିଥିବା କାମିଜଟା । ] ସିଏଁ ଦେଖି, ନିଅ ପିନ୍ଧି ପକା ।

ନଖିଆ : [ମନ୍ଦିଠୁ କାମିଜିଟା ନେଇ ପିନ୍ଧିଲା । କାଲରଟା ମୋଡ଼ି ହୋଇ ଭିତରକୁ ରହିଥାଏ ।]

ମନ୍ଦି : କାମିଜିଟା ମୋଡ଼ି ହେଇ ଯାଇଚି । [କାମିଜିର କାଲରଟା ସିଧା କରି ଦେଲା । କାମିଜିଟାକୁ ଚିହ୍ନିବା ଚିହ୍ନିବା ଦୃଷ୍ଟିରେ ଦେଖିଲା] ଏଟା କାହା କାମିଜି ? ଏଟାତ ମଦନା କାମିଜିମିନ୍ତି ଦିଶୁ ନେଇଁ ।

ନଖିଆ : ନା, ମଦନା କାମିଜିଟା ଶଙ୍କର ଘଡ଼େଇ ପୁଅ ଅଇଁଠା ପିନ୍ଧିକି ତା ଶଶୁର ଘରକୁ ଯାଇଚି । ଏଟା ପଦିଆର ।

ମନ୍ଦି : ଆଜି ସେ ସିନେମାବାଲା ଟଙ୍କା ଦେଲେ ତମ ପେଇଁ ଖଣ୍ଡେ କାମିଜି କରିବ । ଗଲା ଆଇଲାକୁ ଘରେ ଭଲ ମନ୍ଦକି ଖଣ୍ଡେ ନଥିଲେ କେତେ କାହାକୁ ମାଗିବ ?

ନଖିଆ : ହଉ ଦେଖିବା । [ଟିମା ଅସିଲା । ହାତରେ ଧରିଚି ଗୋଟେ ବେଲ୍ଟ]

ଟିମା : ବୋଉ ! ମତେ ଟିକେ ପିନ୍ଧେଇ ଦେଲୁ ।

ନଖିଆ : କିରେ ସେ କମର ପେଟିଟା କୋଉଠୁ ଅଇଁଲୁ ?

ଟିମା : ମୋ ସାଙ୍ଗ ଟୁମୁରି ଠଉଁ ।

ମନ୍ଦି : (ଟିମାକୁ ବେଲ୍ଟ୍ ପିନ୍ଧାଇ ଦେଉ ଦେଉ) କିରେ ସେବ କୁଆଡ଼େ ଗଲା ?

ଟିମା : (ବୁଲି ବୁଲି କି ନିଜ ଅଣ୍ଟାର ବେଲ୍ଟ ଦେଖୁ ଦେଖୁ) ବାଇରେ ଅଛି । ଅରିସି ଭଙ୍ଗିଗଲା ବୋଲି ପାଣି ହାଣ୍ଡିରେ ମୁହଁ ଦେଖୁଚି । (କହି କହି ବାହାରକୁ ଗ୍ଲିଗଲା)

ନଖିଆ : ତତେ ଏ ବେଢ଼ାଣ ଭଲ ମାନୁଚି ।

ମନ୍ଦି : ତମକୁ ବି ଏ ନୁଗା, କାମିଜି ଭଲ ମାନୁଚି । ହେଲେ ତମ ଦିହ ହାତ କଳା କାଠ ପଡ଼ି ଗଲଣି ।

ନଖିଆ : ଭେକ ଓପାସରେ ରହି, ରହି ତୋ ଚେହେର କ'ଣ ହେଲଣି ?

ମନ୍ଦି : ମୋ କଥା କିଏ ପଗ୍ରେ ? ମୁଁ ମାଇପି ଲୋକ ଘରେ ଅଛି । ତମେ ମରଦ ଲୋକ, ନଖାଇ ନ ପିଇ ଖଟି, ଖଟି ତମ ଅନ୍ତ ଦୁହିଁ ହେଇଗଲଣି ଆମର ଜମି ବାଡ଼ି କିଛି ବୋଲି କିଛି ନାହିଁ । ତମ ହାତ, ଗୋଡ଼ ଆଉ ଦିହ ମିହନତ ଉପରେ ଆମେ ଚଳୁଚେ । ତାକୁ ଅଣଦେଖା କଲେ ଆମ ଭେଳା ବୁଡ଼ିଯିବ ।

ନଖିଆ : ତୁ ଏ ଘରର ଲକ୍ଷ୍ମୀ । ତୁ କିଭଳି ଚିରା ନେଳୁରା ପିନ୍ଧୁଚୁ । ତୋ ହାତରେ, ଗୋଡ଼ରେ, ନାକରେ, କାନରେ କୋଉଠି ହେଲେ କିଛି ଗହଣା ନାହିଁ । ମୁଁ ଭାବୁଛି ଏଇ ସିନେମା ବାଲାଙ୍କୁ ମାଗିବି — କାଇଁବି ଚମର କେତେ କୁଆଡ଼େ ଯାଉଛି ଆଉ ତିରିଶ ଟଙ୍କା ଦିଅ । ମୋ ଘରିଙ୍କା ବେକକୁ ଜେଟର ରୂପା ଚେନେ କରିବି ।

ମନ୍ଦି : ଗହଣା ପିନ୍ଧିବାକୁ ମୋର ଆଉ ବୟସ ନାହିଁକି ସରାଗ ନାହିଁ । ସେଇ ସେବଟା କାନପେଇଁ ଫାସିଆ ଦିଇଟା ହେଲେ କରନ୍ତ । ସିଏ ଆଉ କେତେ ଦିନ ନିମ କାଠି ନଗେଇ ଥିବ ? ତମେ ଟିକେ ସରପଞ୍ଚଙ୍କୁ କହୁନା ?

ନଖିଆ : ସେ ଘଡ଼ କଥା କହନା । ଆଜି କେତେ କାକୁତି ମିନତି କରି କରି ଜମା ଟଙ୍କା ପାଞ୍ଚଟା ଦେଲ । ଯେମିତି ସେ ଶଙ୍କା ହାତରୁ ଦଉଚି ।

ମନ୍ଦି : ତମେ ତା ହେଲେ ସେ ହେଗୁଖିଆ ପେଞ୍ଚୁଆ ସରପଞ୍ଚକୁ ନମାଗି ସିନେମା ବାଲାଙ୍କୁ ମାଗ ।

ନଖିଆ : ହଁ ସେମାନେ ବଡ଼ ଲୋକ । କାମ ସଇଲେ ସେଇମାନଙ୍କୁ ମାଗିବି । ତାଙ୍କ ମନ ତଟିଗଲେ ଶହେ, ତିରିଶ ଟଙ୍କା ପକେଇ ଦବାଟା ବଡ଼ କଥା ନୁହେଁ । (ଏଇ ସମୟରେ ଧାଇଁ ଧାଇଁ ଆସିଛି ଟିମା।)

ଟିମା : ସିନେମା ବାଲା ଆଉଛନ୍ତି, ସିନେମା ବାଲା ଆଉଚନ୍ତି ।

ନଖିଆ : କାଇଁ କୁଆଡେ ଗଲେ ?

ଟିମା : ଗୁଡ଼ିଆ ଘର ଅଙ୍କି ପାଖେରେ ହେଲେଣି । ବୋଉ ! ଦେଲୁ ମୋ ମୁଣ୍ଡଟା ଟିକେ ଆଉ ଥରେ କୁଣ୍ଡେଇ ଦେ । ଟମୁରି ଫୁରୁ ଫୁରୁ କରି ଦେଲ ।

ମନ୍ଦି : ହଉ ଆ । (ମନ୍ଦି ଟିମାର ମୁଣ୍ଡ କୁଣ୍ଡେଇ ଦେଉଛି । ନଖିଆ ଇତସ୍ତତ ହେଉଛି । ଏଇ ସମୟରେ ନଖିଆ ଘର ଦୁଆର ମୁହଁରେ କାର ରହିବାର ଶବ୍ଦ ।)

ନଖିଆ : ହେଇ ସେମାନେ ଆଇଲେ । ତମେ ସବୁ ଝଅଟ ସଜ ହେଇପଡ଼ । (ପେଶି ଆସିଛନ୍ତି ସରପଞ୍ଚ, ନିର୍ଦ୍ଦେଶକ, ପ୍ରଯୋଜକ । ନଖିଆ ସେମାନଙ୍କୁ ନମସ୍କାର କରିଛି । ନିର୍ଦ୍ଦେଶକ ଓ ପ୍ରଯୋଜକ ନଖିଆ ଓ ତାର

ପରିବାରଙ୍କୁ ଆଶ୍ଚର୍ଯ୍ୟ ଆଖିରେ ଗୁହିଁଥିଲେ । )

ସରପଞ୍ଚ : ଇଏ ହଉଚି ଲକ୍ଷ୍ମୀଧର ପାତ୍ର । ଗାଆଁରେ ସମସ୍ତେ ନଙ୍ଖିଆ ବୋଲି ଡ କନ୍ତି । ଆଉ ସେ ଜଣକ ତାର ସ୍ତ୍ରୀ ମନ୍ଦାକିନୀ । ତାକ ନାଆଁ ମନ୍ଦି । ଆଉ ସେ ପିଲଟି ନଖିଆର ପୁଅ ।

(ନଖିଆ ଠିଆ ହୋଇ ହ ତଯୋଡ଼ି କୃତକୃତ୍ୟ ଭଙ୍ଗି ପ୍ରଦର୍ଶନ କରୁଥାଏ । ନିର୍ଦ୍ଦେଶକ ଓ ପ୍ରଯୋଜକ ଦୁହେଁ କ'ଣ ଫୁସ୍‌ଫାସ୍ ହେଲେ । ସରପଞ୍ଚଙ୍କୁ ଗୋଟେ କଡ଼କୁ ଡାକିନେଲେ ।)

ନିର୍ଦ୍ଦେଶକ : ଏଟା କ'ଣ ସେଇ ଘର ସରପଞ୍ଚ ବାବୁ ?

ସରପଞ୍ଚ : ଆଜି ସକାଳେ ଆସିଥିଲେ, ଏତେ ଚଞ୍ଚଳ କଣ ଭୁଲିଗଲେ ?

ପ୍ରଯୋଜକ : ଆମେ ଆଜି ସକାଳେ ଏଇ ଜାଗାକୁ ଆସିଥିଲୁ ସେକଥା ଠିକ୍ । କିନ୍ତୁ ଆପଣ କହୁଥିଲେ ଏ ଲୋକଟି ଏ ଅଞ୍ଚଳରେ ସବୁଠୁ ଗରିବ ଲୋକ ବୋଲି । ଏ ଲୋକର ବେଶ ପୋଷାକରୁତ ସେମିତି ଗରିବ ବୋଲି ଜଣା ଯାଉନାହିଁ ।

ସରପଞ୍ଚ : ବିଶ୍ୱାସ କରନ୍ତୁ ଆଜ୍ଞା ସିଏ ଆମ ଅଞ୍ଚଳର ସବୁଠୁ ଗରିବ । ଏ ବେଶ ପୋଷାକ ତାର ନୁହଁ । ସିଏ କାହାଠୁ ମାଗି ଆଣିଚି । ହଉ ଆପଣ ଠିଆ ହୁଅନ୍ତୁ, ମୁଁ ତାକୁ ପଗ୍ଭରୁଚି ।

ପ୍ରଯୋଜକ : ହଉ ପଗ୍ଭର ।

ସରପଞ୍ଚ : (ନଙ୍ଖିଆ ପାଖକୁ ଆସି) କିରେ ନଖିଆ । ଏ ବେଶ ପଟା କୋଉଠୁ ଆଣିଲୁ ?

ନଙ୍ଖିଆ : (ହସି, ହସି କାନ କୁଣ୍ଡେଇ) ନାଇଁ ଆଜ୍ଞା, ଛୁଆଏ ସାଇଭିତରୁ ମାଗି ଆଣିଚନ୍ତି । ଫଅଟ ଉଠେଇବେତ, ସେଇଥି ପେଇଁ ।

ସରପଞ୍ଚ : ନାଇଁ, ନାଇଁ ଏ ପୋଷାକ ପିନ୍ଧିଲେ ଫଟ ଉଠିବ ନେଇଁ । ଏସବୁ ଖୋଲିପକା । ତୋ ସ୍ତ୍ରୀ ପିଲଙ୍କୁ କହ ସେମାନେ ଏସବୁ ଥୋଇ ଦେଇ ପ୍ରତିଦିନ ଯାହା ପିନ୍ଧନ୍ତି ସେଇଆ ପିନ୍ଧିବେ ।

ନଙ୍ଖିଆ : ନାଇଁ ଆଜ୍ଞା, ସେମିତି କେମିତି ହବ ? ଏ ମସିଆ, କୋତରା ଚିରା, ଫଟା ଲୁଗାରେ ଫଅଟ ଭଲ ଉଠିବ ନେଇଁ ।

ସରପଞ୍ଚ : ସେମାନେ ଏତେ ବାଟରୁ ଆଇଚନ୍ତି କ'ଣ ତୋର ଭଲ ଫଟ ଉଠେଇବାକୁ ? ଯା ତୋ ଲୁଙ୍ଗି ବଦଳି ପକା । କିରେ ଏମିତି

ଭେଲେକାମିତି ଅନେଇଚୁ କ'ଣ ?

ନଖିଆ : ନାଇଁ ସରପଞ୍ଚ ବାବୁ ମୋ ଛୁଆଏ କେତେ ଖୁସିରେ ମାଗି ଯାଚିକି ଆଣି ପିନ୍ଧିଚନ୍ତି ।

ପ୍ରଯୋଜକ : ଦେଖ ଲକ୍ଷ୍ମୀଧର, ଆମେ ତମ ଉପରେ ଗୋଟିଏ ଡକୁମେଣ୍ଟାରୀ ସିନେମା କରିବାକୁ ଆସିଛୁ । ଆମର ଯେମିତି ଦରକାର ସେମିତି ନ ହେଲେ ଆମେ ସୁଟିଂ କରିବୁ ନାହିଁ ।

ସରପଞ୍ଚ : ତୁ ଯଦି ନାଇଁ କରିବୁ ତା ହେଲେ ସେମାନେ ଆଉ କାହା ଘରକୁ ଯିବେ ।

ନଖିଆ : ସରପଞ୍ଚ ବାବୁ ! ତମେ ଟିକେ ବାବୁଙ୍କୁ ବୁଝା ।

ସରପଞ୍ଚ : କ'ଣ ବୁଝେଇବି ?

ନଖିଆ : ମୋ ଠେଇଁ କିଛି ନାହିଁ, ମୁଁ ଏ ନୁଗା, କାମିଜ ବଦୁଳି ଦେଇ ନୁଙ୍ଗି ଗାମୁଛା ପିନ୍ଧି ଦେବି । ହେଲେ ଛୁଆପିଲା ଯାହା ପିନ୍ଧିଚନ୍ତି ସେମିତି ଥାଉ ।

ସରପଞ୍ଚ : କିରେ ତା କେମିତି ହବ ? ତୁ ଗରିବ ଲୋକ ବୋଲି ସିଏ ତତେ ଓ ତୋ ଘରକୁ ନେଇ ସିନେମା କରିବେ । ତୁ ଏମିତି ଜାମା ଯୋଡ଼ ହେଲେ କି ତୋ ସ୍ତ୍ରୀ ପିଲାଏ ଭଲ ଲୁଗାପଟା ପିନ୍ଧିଲେ ସିଏ କେମିତି ସୁଟିଂ କରିବେ ? ଏମିତି ଜାମା ଯୋଡ଼ ପିନ୍ଧିଥିବା ଲୋକ କ'ଣ ଭୁବନେଶ୍ୱରରେ ଅଭାବ ଥିଲାଯେ ସିଏ ଏତେ ବାଟ ଆସିଲେ ?

ନଖିଆ : ନାଇଁ ବାବୁ, ଚିରା ନୁଗାରେ ଫଅଟ ଉଠିଲେ ଆମକୁ ଲାଜ ମାଡ଼ିବ ।

ନିର୍ଦ୍ଦେଶକ : ସବୁଦିନ ଚିରା ଲୁଗା ପିନ୍ଧୁଚ, ସେତେବେଳକୁ ଲାଜ ମାଡୁନାହିଁ ।

ନଖିଆ : ସିଏ ନିଆରା କଥା ଆଜ୍ଞା, ଫଟ ଉଠିଲା ବେଳେ ସମତେ ବେଶ ପୋଷାକ ପିନ୍ଧିକି ଫଅଟ ଉଠାନ୍ତି । ଆମେ ଗରିବ ହେଲୁ ବୋଲି କ'ଣ ମଣିଷ ନୁହଁ ?

ନିର୍ଦ୍ଦେଶକ : ଆରେ ତମେ ଏମିତି Sentimental କାହିଁକି ହେଉଛ ? ତମେ ସମସ୍ତଙ୍କଠାରୁ ଭଲ ମଣିଷ । ସେଥିପାଇଁ ଆମେ ଏତେ ଦୂରରୁ ଆସିଚୁ ତମ ଉପରେ ସିନେମା କରିବାକୁ । ତମେ ଯଦି ଫଟ ଉଠେଇବ ଆମେ ତାର ବ୍ୟବସ୍ଥା କରିବୁ ।

ପ୍ରଯୋଜକ : ହଁ, ସିନେମା ସରିଲେ ତମେ ଏଇ ଭଲ ପୋଷାକ ପୁଣି ଥରେ ପିନ୍ଧିବ । ଆମେ ଫଟ ଉଠେଇ ଦବୁ ।

ନଖିଆ : ସତ କହୁଚ ଫଅଟ ଉଠେଇ ଦବ ନା ମିଛରେ ଠକି ଦଉଚ ?

ସରପଞ୍ଚ : କିରେ ଏତେ ବଡ଼ ଲୋକ କ'ଣ ମିଛ କୁହନ୍ତି ?

ପ୍ରଯୋଜକ : (କ୍ୟାମେରା ଦେଖାଇ) ହେଇ ଦେଖ ଏଇଟା ଫଟ ଉଠା କ୍ୟାମେରା ସିନେମା ସରିଲେ ତମ ସମସ୍ତଙ୍କର ଆଠ, ଦଶଟା ଫଟ ଉଠେଇ ଦେବି ତମେ ରଖିବ ।

ସରପଞ୍ଚ : (ନଖିଆର ପିଠିରେ ହାତମାରି) ହଉ ଯା, ତୋ ଘରିଜାକୁ ବୁଝା । ଡେରି ହଉଚି ।

ନଖିଆ : ହଉ ତା ହେଲେ ମୁଁ ତାକୁ ପଗ୍ରରେ ।

ନିର୍ଦ୍ଦେଶକ : ଠିକ୍ ଅଛି ପଗ୍ରର । ଜଲ୍‌ଦି ପଗ୍ରର, ନ ହେଲେ ଆମେ ଅନ୍ୟ ଘର ଦେଖିବୁ । [ନଖିଆ ମନ୍ଦି ପାଖକୁ ଗଲା । ମନ୍ଦିକୁ ଗୋଟେ କଣକୁ ଡାକିନେଇ ଦୁହେଁ ଗୁପା ଗୁପା କଣ୍ଠରେ କଥାବାର୍ତ୍ତା ହେଲେ ।]

ମନ୍ଦି : ନାଇଁ, କାମ ସରିଲେ କିଏ କୁଆଡ଼େ ପଳେଇବେ । ତମେ କୁହ ସିଏ ଆଗ ଆମ ଫଅଟ ଉଠେଇ ଦିଅନ୍ତୁ ।

ନଖିଆ : ଏବୁ କଥାରେ ଏତେ ଅବିଶ୍ୱାସ କଲେ ହବ ନେଇଁ । ବାବୁ ନିଜେ କହିଲେ ଉଠେଇବେ ବୋଲି ।

ମନ୍ଦି : ସିଏତ ବଡ଼ ଲୋକ, କାମ ସରିଲେ ତମେ ତାଙ୍କୁ ସାହାସ କରି କହିବତ ?

ନଖିଆ : କହିବି ନେଇଁ କାହିଁକି ?

ମନ୍ଦି : ସେମାନଙ୍କ ଠେଇଁ କିଛି ନାହିଁ, ଏଇ ପେଞ୍ଚୁଆ ସରପଞ୍ଚର ସବୁ ନବରଙ୍ଗ ।

ନଖିଆ : ଆସ୍ତେ କହ, ତାଙ୍କୁ ଶୁବିବ ।

ସରପଞ୍ଚ : [ଏଇ ସମୟରେ ସରପଞ୍ଚ ବଡ଼ ପାଟିରେ ନଖିଆକୁ ଡାକିକି କହିଲେ] କ'ଣ ହେଲା କିରେ ନଖିଆ ? ତୋ ଘରିଜା ମଙ୍ଗିଲା ?

ନଖିଆ : ହଁ, ଆଜ୍ଞା ତାକୁ ମଙ୍ଗେଇଲି ।

ପ୍ରଯୋଜକ : ଆଉ ତା ହେଲେ ଡେରି କାଇଁକି ? ଶୀଘ୍ର ପ୍ରସ୍ତୁତ ହୁଅ । ଚଟାପଟ ଲୁଗା ବଦଳି ପକା ।

ନର୍ଷିଆ : ଯାଉଛି ଆଜ୍ଞା । ( ନର୍ଷିଆ ମଦ ପାଖକୁ ଆସିଲା । ନର୍ଷିଆ, ମଦ, ସେବତୀ, ଟିମା ଘର ଭିତରକୁ ଗଲେ । ନିର୍ଦ୍ଦେଶକ, ପ୍ରଯୋଜକ ନର୍ଷିଆର ଘରକୁ ବିଭିନ୍ନ ଆଙ୍ଗେଲ୍ରୁ ଦେଖିଲେ ।)

ପ୍ରଯୋଜକ : ପ୍ରଭଂଜନ ବାବୁ ! **Script** କପି କରାଯାଇଛି ତ ?

ନିର୍ଦ୍ଦେଶକ : ହଁ । ସେ କାମ କାଲି ରାତିରୁ ସରିଛି ।

ପ୍ରଯୋଜକ : ସର୍ଟ ଡିଭିଜନ କଟା ଯାଇଛି ?

ନିର୍ଦ୍ଦେଶକ : ସେ ସବୁ ରେଡ଼ି । [Imported ସିଗାରେଟ୍ ବାହାର କଲେ ପ୍ରଯୋଜକ । ନିର୍ଦ୍ଦେଶକଙ୍କୁ ଦେଲେ ।]

ପ୍ରଯୋଜକ : ସରପଞ୍ଚବାବୁ ! ଆପଣ ଖଣ୍ଡେ ନିଅନ୍ତୁ ।

ସରପଞ୍ଚ : ଇଏତ ବିଦେଶୀ ସିଗାରେଟ୍ ପରି ଜଣାଯାଉଛି । ଦିଅନ୍ତୁ ଖଣ୍ଡେ ଚାଖି ଦେଇଥିବା ।

ନିର୍ଦ୍ଦେଶକ : ଚାଖିବେ ? ଏଟା କ'ଣ ମଟନ ନା ଚିକେନ୍ ହୋଇଛି ଯେ ଚାଖିବେ ?

ସରପଞ୍ଚ : ଏ ବିଦେଶୀ ସିଗାରେଟ୍ ମୁଁ କମା ଖାଇ ନଥିଲି ।

ପ୍ରଯୋଜକ : [ଲାଇଟର୍ ମାରି ସିଗାରେଟ୍ ଲଗାଇଲେ । ସେହି ଲାଇଟର୍ରୁ ନିର୍ଦ୍ଦେଶକ ଓ ସରପଞ୍ଚ ଉଭୟ ସିଗାରେଟ୍ ଲଗାଇଲେ ।]

ପ୍ରଯୋଜକ : ଆଜ୍ଞା ! ସରପଞ୍ଚ ବାବୁ, ଆପଣ ଆଉ ବିଦେଶୀ ଜିନିଷ କଣ ଚାଖିଛନ୍ତି ?

ସରପଞ୍ଚ : ନା, ଆଉ କିଛି ଚାଖି ନାହିଁ । [ସିଗାରେଟ୍ ଟାଣ ଟାଣ କହିଲେ]

ପ୍ରଯୋଜକ : ବିଦେଶୀ ମଦ ଚାଖି ନାହାନ୍ତି ?

ସରପଞ୍ଚ : (ଧୂଆଁ ଅଟକିଲା,କାଶି ପକାଇଲେ) ସେ ସବୁ ମୁଁ କୁଆଡୁ ପାଇବି ?

ନିର୍ଦ୍ଦେଶକ : କାଲି ରାତିରେ ତମେ କୁଆଡେ଼ ଗଲ ? ଦେଶୀ କୁକୁଡ଼ା ସାଙ୍ଗକୁ ବିଦେଶୀ ମାଇଟା କାଲି ଭରି ଜମିଗଲା ।

ସରପଞ୍ଚ : ମତେ ସେ କଥାଟା ଆଗରୁ ଟିକେ ସୂଚକ ଦେଇଥିଲେ ମୁଁ କ'ଣ ଯାଇ ଥାଆନ୍ତି ?

ପ୍ରଯୋଜକ : ହଉ ଠିକ୍ ଅଛି । ଆଜି ସୁଟିଂ ସରିଗଲେ ପୁଣି ବ୍ୟବସ୍ଥା କରିବା । ଆଜ୍ଞା ସେ କ୍ୟାମେରା ମ୍ୟାନ ଆଉ ମେକ୍ଅପ୍ ମ୍ୟାନ୍ ଗଲେ କୁଆଡେ଼ ?

ସରପଞ୍ଚ : ଆମ ଗାଁଆଁ ତୋଟାରେ ପଣି ଭଣ ଫଟ ଉଠୋଉଥିଲେ ।

ପ୍ରଯୋଜକ : ଆପଣ ଟିକେ ଦେଖିଲେ ସେମାନେ କୁଆଡ଼େ ଗଲେ ?

ସରପଞ୍ଚ : ଦେଖୁଛି ଆଜ୍ଞା । (ପ୍ରସ୍ଥାନ)

ନିର୍ଦ୍ଦେଶକ : ମୁଁ ଭାବୁଛି ଏ ଘରଟାକୁ ଟିକେ ଟଚ ଅପ୍ କରିବାକୁ ପଡ଼ିବ ।

ପ୍ରଯୋଜକ : ଟଚ ଅପ୍ କରିବାକୁ ପଡ଼ିବ ?

ନିର୍ଦ୍ଦେଶକ : ଘରର ଅବସ୍ଥାକୁ ଆଉ ଟିକେ ଖରାପ ବୋଲି ଦେଖାଇବାକୁ ହେବ ।

ପ୍ରଯୋଜକ : You are right !

ସରପଞ୍ଚ : (ପୁନଃ ପ୍ରବେଶ)

ପ୍ରଯୋଜକ : କ'ଣ ହେଲା ? ତାଙ୍କୁ ପାଇଲେ ?

ସରପଞ୍ଚ : ସିଏ ସେଇ ତୋଟାରେ ଅଛନ୍ତି । ମୁଁ ଜଣକୁ ପଠେଇଛି ସେ ଡାକିଦବ ।

ନିର୍ଦ୍ଦେଶକ : ହଉ ଠିକ୍ ଅଛି । ଆପଣ ଆଉ ଗୋଟେ କାମ କଲେ ।

ସରପଞ୍ଚ : ଆଉ କି କାମ ?

ନିର୍ଦ୍ଦେଶକ : ଏ ଘର ଛାଳରୁ ଏଠୁ ସେଠୁ ଘରିବିଢ଼ା ନଡ଼ା ଟାଣି ଆଣନ୍ତୁ ।

ସରପଞ୍ଚ : ନଡ଼ା କାହିଁକି ଟାଣିବି ?

ପ୍ରଯୋଜକ : ଆପଣଙ୍କୁ ଆହୁରି ବୁଝେଇବାକୁ ପଡ଼ିବ ।

ସରପଞ୍ଚ : ଆଜ୍ଞା କି ଦେଖେଇ ଦେଲେ ମୁଁ ବାହା ଗିଳିଦେବି । ଟିକେ କଥାର ଖିଅଟା ଧରେଇ ଦିଅନ୍ତୁ ।

ନିର୍ଦ୍ଦେଶକ : ଏତିକି ଧରି ପାରୁ ନାହାନ୍ତି ? ଛାଳରୁ ଆଉ ଘରିବିଢ଼ା ନଡ଼ା ଟାଣି ଆଣିଲେ, ଘରଟା ଅଧିକ ଦରିଦ୍ର ଦିଶିବ ।

ସରପଞ୍ଚ : ବୁଝିଗଲି ସାର୍, ବୁଝିଗଲି ।

ପ୍ରଯୋଜକ : ବୁଝିଲେ ଯେ କିଛୁ ଡେରିରେ । ( ପ୍ରଯୋଜକ ଓ ନିର୍ଦ୍ଦେଶକ ହସି ଉଠିଲେ । )

ନିର୍ଦ୍ଦେଶକ : ହଉ ଠିକ୍ ଅଛି । ଏଥର ଛାଳରୁ ଘରିବିଢ଼ା ଓଲାରି ଆଣନ୍ତୁ ।

ସରପଞ୍ଚ : ଆଣୁଚି ସାର୍ । (ସରପଞ୍ଚ ଛାଳ ପାଖକୁ ଗଲେ)

ନିର୍ଦ୍ଦେଶକ : ହଁ ସେଇଠୁ ଟାଣନ୍ତୁ । [ସରପଞ୍ଚ ନଡ଼ା ଟାଣିବା ବେଳେ ଘର ଭିତରକୁ ଖସ୍ ଖସ୍ ଶବ୍ଦ ହେଲା । ନଖିଆ ଘର ଭିତରୁ ଚିତ୍କାର କଲା]

ନଖିଆ : [ଘର ଭିତରୁ] ଛାଳ କିଏ ଓଲାରୁଚି ? ହାୟ୍ ହାୟ୍ । ଯେତେ କହିଲେ ପଧାନଘର ହଡ଼ାଟାକୁ ଫିଟେଇ ଦଉଚନ୍ତି । ଦଉଚି ଆଜି ଶଳାର ଅଣ୍ଟା

ଭର୍ଗି । କୁଆଡ଼େ ଗଲ ମୋ ବାଉଁଶ ଠେଙ୍ଗା । [କେହି କହି ଠେଙ୍ଗାଧରି ପଦାକୁ ଆସିଲ । ]

ସରପଞ୍ଚ : ହାଁ ହାଁ । ମୁଁ, ମୁଁ ସମାଜି, ସମାଜି ।

ନଖିଆ : କିଏ ? ସରପଞ୍ଚ ବାବୁ ? (ଠେଙ୍ଗାଟା ତଳକୁ କରିଦେଇ । ସେତେବେଳକୁ ସରପଞ୍ଚବାବୁ ବିଡ଼ାଏ ନଡ଼ା ଧରି ଥରୁଥିଲେ) ମୁଁ ଜଇଲି ପଧାନ ଘର ହଡ଼ା ।

ସରପଞ୍ଚ : ଆଉ ଟିକକେ ମୋ ମୁଣ୍ଡଟା ଛତୁ ହେଇ ଯାଇ ଥାଆନ୍ତା ।

ନଖିଆ : ତମେ ଗୁଜ କାହିଁକି ଓଇଲୁ ଥିଲ ? [ସରପଞ୍ଚ ଥରି ଥରି ନିର୍ଦ୍ଦେଶକଙ୍କ ଆଡ଼କୁ ହାତ ଦେଖାଇ ଦେଲେ]

ନିର୍ଦ୍ଦେଶକ : ତୁମେ ବ୍ୟସ୍ତ ହୁଅନା ଲକ୍ଷ୍ମୀଧର ! ସୁଟିଂ ସରିଲେ ଆମେ ଯୋଉଠୁ ଯାହା କାଢ଼ିଚୁ ସେଇଠି ଥୋଇ ଦେବୁ ।

ପ୍ରଯୋଜକ : ତମେ ଯା ଶୀଘ୍ର ଲୁଗା ଚେଞ୍ଜ କରିପକା । [ନଖିଆ କିଛି ନ କହି ଗୁମ୍ ହୋଇ କିଛି ସମୟ ଠିଆ ହେଲ, ତାପରେ ଘର ଭିତରକୁ ଗଲ । ସରପଞ୍ଚ ସେମିତି ଥରୁଥିଲେ ]

ନିର୍ଦ୍ଦେଶକ : [ସରପଞ୍ଚର ପିଠି ଥାପୁଡାଇ] ଆପଣ ଖୁବ୍ ଡରିଯାଇଚନ୍ତି ଦେଖୁଛି ।

ସରପଞ୍ଚ : ଡରିବି ନେଇଁ ? ସିଏ ଯୋଉ ନିଗଣିଆ ଠେଙ୍ଗା ପାହାର ଉଞ୍ଚେଇ ଥିଲ, ମୋ ମୁଣ୍ଡର ଅବସ୍ଥା କ'ଣ ହୋଇଥାଆନ୍ତା ଭବି ପାରୁଛନ୍ତି ?

ପ୍ରଯୋଜକ : ଆମେ ସବୁ ଥାଉଁ ଥାଉଁ ଆପଣଙ୍କ ମୁଣ୍ଡ ଫାଟି ଥାଆନ୍ତା ବୋଲି କେମିତି ଭବୁଛନ୍ତି ? ହଉ ଠିକ୍ ଅଛି । ଆଉ ଦି ବିଡ଼ା ନଡ଼ା ଟାଣନ୍ତୁ ।

ସରପଞ୍ଚ : ନାଇଁ, ନାଇଁ ମୁଁ ଆଉ ସେ କାମ କରିବି ନେଇଁ ଯେତିକି ହେଲ ସେତିକି ।

ପ୍ରଯୋଜକ : କାଇଁକି କ'ଣ ହେଲ ?

ସରପଞ୍ଚ : ଆଉ ଅଳପକେ ମୋ ଜୀବନ ଯାଇ ଥାଆନ୍ତା ।

ନିର୍ଦ୍ଦେଶକ : ହଉ, ସେଇ ଦି'ବିଡ଼ା ଟଣା ହେଇ ଥାଉ, ଚଳିବ ।
[ଏଇ ସମୟରେ କ୍ୟାମେରା ମ୍ୟାନ ଓ ଆସିଷ୍ଟାଣ୍ଟ କ୍ୟାମେରା ମ୍ୟାନ କ୍ୟାମେରା ଧରି ପ୍ରବେଶ କଲେ ।] ହେଇତ ସତ୍ୟବାବୁ ଆସି ଗଲେଣି । ହଁ ସେଇଠି କ୍ୟାମେରା ରଖନ୍ତୁ । ହଁ, ପ୍ରଥମେ ଘରର ବ୍ୟାକ୍‌ଗ୍ରାଉଣ୍ଡଟା ନିଅନ୍ତୁ । ରେଡ଼ି, ସ୍ଲେଟ ଦେଖାନ୍ତୁ ।

ଆ. କ୍ୟା. : ସ୍ଲେଟ୍‌ରେ କେତେ ଲେଖିବି ? ସିନ୍ ଓ୍ୱାନ୍, ସଟ୍ ଓ୍ୱାନ୍, ଟେକ୍
ମ୍ୟାନ ଓ୍ୱାନ ?

ନିର୍ଦ୍ଦେଶକ : ହଁ ଠିକ୍ ଅଛି । ସ୍ଲେଟ ଦେଖାନ୍ତୁ । (ଆସିଷ୍ଟାଣ୍ଟ୍ କ୍ୟାମେରା ମ୍ୟାନ୍ ସ୍ଲେଟ୍ ଦେଖାଇଲେ) ରେଡ଼ି ଓ୍ୱାନ, ଟୁ, ଥ୍ରି, ଫୋର ଫାଇଭ୍ ଷ୍ଟାର୍ଟ । [କ୍ୟାମେରାମ୍ୟାନ ସଟ୍ ନେଲେ । ନିର୍ଦ୍ଦେଶକ ତାଙ୍କୁ ନିର୍ଦ୍ଦେଶ ଦେଉଥାଆନ୍ତି । ଘରର ବିଭିନ୍ନ ଆଙ୍ଗଲ୍‌ର ଫଟ ନେଲେ । ଏହି ସମୟରେ ନଣିଆ ଘରୁ ପଦାକୁ ଆସିଛି । ତାର ପିଲା ଦୁଇଟିଙ୍କୁ ଧରି ମଦି ଦୁଆର ମୁହଁରେ ଅଧା ମୁହଁ ଦେଖାଇଛି । ସମସ୍ତେ ତାଙ୍କର ଚିଗ ମଇଳା ଲୁଗା ପଟା ପିନ୍ଧିଚନ୍ତି ।]

ନିର୍ଦ୍ଦେଶକ : ଦ୍ୟାଟସ୍ ରାଇଟ୍ । ଏଥର ହେଲା । ଅଉ ଟିକେ ମେକ୍‌ଅପ୍ ଦରକାର ।

ପ୍ରଯୋଜକ : ମେକଅପ ମ୍ୟାନ୍ କୁଆଡେ଼ ଗଲେ ?

ସରପଞ୍ଚ : ଛକ ଦୋକାନ ପାଖରେ ଠିଆ ହେଇ ଚ୍ୟ' ପିଉଥିଲେ ।

ନିର୍ଦ୍ଦେଶକ : ତାଙ୍କୁ ଟିକେ ଶୀଘ୍ର ଡାକି ଦିଅନ୍ତୁ ।

(ମେକ୍‌ଅପ୍ ମ୍ୟାନ୍ ପ୍ରବେଶ କରିଛନ୍ତି)

ପ୍ରଯୋଜକ : କାମ କରିବାକୁ ଆସିଛନ୍ତି ନା ବୁଲିବାକୁ ଆସିଛନ୍ତି ?

ମେ. ମ୍ୟାନ୍ : ନାଇଁ ସାର୍ । ଏଇ ଟିକେ ଚ୍ୟ' ପିଉଥିଲି ।

ନିର୍ଦ୍ଦେଶକ : ଠିକ୍ ଅଛି, ମେକ୍ ଅପ୍ ବାକ୍‌ସ ବାହାର କରନ୍ତୁ । ତୁମେ ଟିକେ ସେଇଠି ବସ ଲକ୍ଷ୍ମୀଧର । ତମର ମେକ୍‌ଅପ୍ ହେବ । (ନଣିଆକୁ ବସାଇଲେ)

ନଣିଆ : ସିଏ କ'ଣ ବାବୁ ?

ନିର୍ଦ୍ଦେଶକ : ତମେ ସିନେମା କରିବ, ମେକ୍ ଅପ୍ ନବ ନାହିଁ କେମିତି ? [ତଥାପି ନଣିଆ କିଛି ବୁଝି ନପାରି ବୋକାଙ୍କ ପରି ନିର୍ଦ୍ଦେଶକଙ୍କ ମୁହଁକୁ ଅନାଇଁ ରହିଲା] ଏମିତି ବୋକା ପରି ନିର୍ଦ୍ଦେଶକଙ୍କ ମୁହଁକୁ ଅନାଇଁ ରହିଲା] ଏମିତି ବୋକା ପରି ଅନେଇଚ କ'ଣ ? ତମ ଗାଆଁରେ କ'ଣ କେବେ ଥିଏଟର କି ଯାତ୍ରା ହୁଏ ନାହିଁ ?

ସରପଞ୍ଚ : କିରେ ନଣିଆ ! ଏ ବରଷ କୁଆଁରପୁନେଇଁକି ତାରପୁରବାଲା ଯାତରା କରୁଥିଲେ ଦେଖିନଇଁ ?

ନଖିଆ : ହଁ, ଦେଖିଚି ।

ନିର୍ଦ୍ଦେଶକ : ସେମାନେ ଯାତ୍ରା କରିବା ଆଗରୁ ମୁହଁରେ ପାଉଡର ମାରୁଛନ୍ତି ଦେଖିନା ?

ନଖିଆ : ହଁ, ଯାତରା ପାଟି ବଙ୍ଗ ପାଉଁଶର ନରେଇବା ଦେଖିଚି ।

ନିର୍ଦ୍ଦେଶକ : ତମେ ଏଇଠି ବସ । ତମ ଦେହରେ, ମୁହଁରେ ପାଉଡ଼ର ମରାଯିବ ।

ପ୍ରଯୋଜକ : ବସ ଲକ୍ଷ୍ମୀଧର, ବସୁନ

ସରପଞ୍ଚ : କିରେ ଏମିତି ଇଆଡକୁ ସିଆଡ଼କୁ ଅନଉଁଚୁ କ'ଣ ? ବସ, ସେଇଠି ବସ । (ମାଡ଼ିକି ବସାଇ ଦେଲ)

ନିର୍ଦ୍ଦେଶକ : ଶରତବାବୁ ଶୀଘ୍ର କାମ କର ।

ମେ. ମ୍ୟାନ୍: କେମିତିଆ ମେକଅପ୍ କରିବି ସ.ର୍ ?

ନିର୍ଦ୍ଦେଶକ : ଦେହକୁ ଟିକେ ହାଡୁଆ ଆଉ ଖିଉଳ କର । ମୁହଁରେ ଅନେକ ଘଙ୍ଗ ସୃଷ୍ଟି କର !

ମେ. ମ୍ୟାନ୍: [କିଛି ପାଉଡ଼ର ଘୋଳାଇଲେ ଓ ମେକ୍ଅପ୍ କରିବାକୁ ରେଡ଼ି ହୋଇଗଲେ ।] ହାତଟାକୁ ଟିକେ ଏଆଡ଼କୁ ବଢ଼ା ।

ନଖିଆ : (ଅନିଚ୍ଛା ସତ୍ତ୍ୱେ ହାତ ବଢ଼ାଇଲା)

ମେ. ମ୍ୟାନ୍: [ କଳା ରଙ୍ଗ ମାରି ହାତରେ ଶିର ତିଆରି କଲ ] ହଁ, ଆର ହାତଟା ଦେଖା ।

ମନ୍ତ୍ରି : [ଶୁଣେଇ ଶୁଣେଇ କହିଲା] ସେମିତି କଳା ବୋଳିଲେ ଆମର ଫଅଟ ଉଠେଇବୁ ନଇଁ ।

ସରପଞ୍ଚ : ରୁହ ତମେ ମାଇପି ଲୋକ କାହିଁକି ପାଟି କରୁଚ ? ଟିକେ ପାଉଡ଼ର ମାରିଦେବେ, କାମ ସଇଲେ ତମେ ଧୋଇ ଦବ । ଏସବୁ କ'ଣ ସବୁଦିନେ ରହିବ ?

ନଖିଆ : [ନଖିଆ ମେକ୍ଅପ ବାଲାକୁ ଠେଲି ଦେଇ ଉଠି ପଡ଼ିଲା] ନାଁ, ଏମିତି ହାଡ଼ କଙ୍କାଳ ବେଶ ମୁଁ ହେବି ନେଇଁ ।

ନିର୍ଦ୍ଦେଶକ : ତୁମେ ବ୍ୟସ୍ତ ହୁଅନା ଲକ୍ଷ୍ମୀଧର ।

ସରପଞ୍ଚ : କିରେ ନଖିଆ, ଏମିତି ଛୋଟ ଛୁଆଙ୍କମିତି କ'ଣ ହଉଚୁ ?

ପ୍ରଯୋଜକ : ଶୁଣ ଲକ୍ଷ୍ମୀଧର ! ତମକୁ ଆଉ ଅଧିକା ଶହେ ଟଙ୍କା ଦିଆଯିବ ।

ବଡ଼ ଶୀଘ୍ର କାମ ସରିଯାଉ । (ନଖିଆ କାନ୍ଧକୁ ଧରି ମାଡ଼ି ବସିଲେ, ସେ ଅନିଚ୍ଛା ସତ୍ତ୍ୱେ ପଇସା ଲୋଭରେ ବସିଲା ।)

ସହପାଠୀ : ସିଏ ସିନା ମାଇପି ଲୋକ କିଛି ବୁଝୁନେଇଁ, ତୁ ଜାଣିବା ଶୁଣିବା ଲୋକ ହୋଇ ଏମିତି ଅବୁଝା ହେଲେ ହବ ? ମୁହଁରେ ଦିହରେ ଯୋଉଠି ଯେତେ ପାଉଡ଼ର ମାଖୁଚନ୍ତି ମାଖନ୍ତୁ । ଧୋଇଦେଲେ ସବୁ ଛାଡ଼ି ଯିବ ।

ପ୍ରଯୋଜକ : ଶରତବାବୁ ଶୁଣିଛ କ'ଣ ମେକ କରିଯା । ଏମିତି ମେକ୍ଅପ୍ କରିବ ଯେମିତି ଜଣା ପଡ଼ିବ ଲକ୍ଷ୍ମୀଧର ଆମ ରାଜ୍ୟର ସବୁଠୁ ଗରିବ ଲୋକ । [ମେକ୍ଅପ୍ ମ୍ୟାନ୍ ନଖିଆର ମୁହଁ ଓ ଦେହରେ କଳା ଧଳା ମାରି ମେକ୍ଅପ୍ କଲେ । ତା ଦେହରେ କଙ୍କାଳ ଦେଖାଇଲେ ।]

ନିର୍ଦ୍ଦେଶକ : ଏଠି ଟିକେ କଳା ମାର । ହଁ, ଏପଟେ ଗୋଟେ ସ୍ଟ୍ରୋକ୍ ମାର । ହଁ, ହାତ ପୂର୍ତ୍ତି କରନ୍ତୁ ।

ମେ. ମ୍ୟାନ୍: ସରିଲା ସାର ଆଉ ଟିକେ !

ନିର୍ଦ୍ଦେଶକ : ଆପଣ କ୍ୟାମେରା ରେଡ଼ି କରନ୍ତୁ । ଏଇଠି ପିଣ୍ଡା ଉପରେ ବସିବେ ଲକ୍ଷ୍ମୀଧର । ମୁଁ ଏଇଠି ଠିଆ ହୋଇ ତାକୁ କେତେଟା ପ୍ରଶ୍ନ ପଚାରିବି । ଦେଖନ୍ତୁ ଯେମିତି ଏଘରର ଘର, ଘରର ଭଙ୍ଗା ଭଙ୍ଗା ଅଂଶ ଆଉ ସେ ପାଣି ମାଠିଆ, ଏଠି ଯୋଉ ଚୂଲି ଟଙ୍ଗା ହେଇଛି ସବୁ କଭର କରିବେ ।

କ୍ୟା. ମ୍ୟାନ୍: ଠିକ୍ ଅଛି । [ଆସିଷ୍ଟାଣ୍ଟ କ୍ୟାମେରା ମ୍ୟାନ୍‌କୁ କହିଲେ] ହଁ କ୍ୟାମେରା ଏଇଠି ଫିକ୍ସ କରନ୍ତୁ । [ଆସିଷ୍ଟାଣ୍ଟ କ୍ୟାମେରା ମ୍ୟାନ୍ କ୍ୟାମେରା ସେଟ୍ କଲେ] ହଁ ଠିକ୍ ଅଛି ।

ନିର୍ଦ୍ଦେଶକ : ଲକ୍ଷ୍ମୀଧରର ମୁହଁ ଆଉ ଚିରାଫଟା ଢାଞ୍ଚାର କ୍ଲୋଜ୍ ଫଟୋ ନେବେ । ଆଚ୍ଛା ଶରତ ବାବୁ ! କ'ଣ ମେକଅପ୍ ସରିଲା ?

ମେ ମ୍ୟାନ୍: ହଁ ଆଜ୍ଞା ସରିଗଲା ।

ପ୍ରଯୋଜକ : ଏଠିକି ଆସ ଲକ୍ଷ୍ମୀଧର ! [ଲକ୍ଷ୍ମୀଧର ଆସି ପ୍ରଯୋଜକ ଓ ନିର୍ଦ୍ଦେଶକଙ୍କ ଆଗରେ ଠିଆହେଲା । ହଠାତ୍ ନିର୍ଦ୍ଦେଶକ ଲକ୍ଷ୍ମୀଧରର ଚିରା ଲୁଙ୍ଗିରେ ଆଙ୍ଗୁଳି ପୂରାଇ ବଡ଼ କରି ଚିରି ଦେଲେ । ଲକ୍ଷ୍ମୀଧର ଚିତ୍କାର କରି ଉଠିଲା ।]

ନଖିଆ : ଏଁ, ମୋ ଲୁଙ୍ଗିଟା, ଗଲା ଗଲା ବାବୁ ଚିରିଗଲା । ଇଏ କ'ଣ କରୁଚ

ବାବୁ ! ମୋର ଏଇ ଖଣ୍ଡକ । ମୁଁ କ'ଣ ପିନ୍ଧିବି ?

ପ୍ରଯୋଜକ : ତୁମେ କିଛି ବ୍ୟସ୍ତ ହୁଅନା ଇକ୍ଷ୍ୱାଧର । ଏ ଲୁଙ୍ଗିଟା ଏମିତି କେତେ ଟଙ୍କା ? ନୂଆ ବେଳେ ଯା ଦାମ୍ ଅତି ବେଶୀରେ ୨୫ ଟଙ୍କା ହୋଇଥିବ । ତମକୁ ମୁଁ ଏଥିପାଇଁ ୩୦ଟଙ୍କା ଦେବି । ତୁମେ ନୂଆ ଲୁଙ୍ଗିଟେ କିଣିବ ।

ନଖିଆ : (ଲୁଙ୍ଗିର ଚିରା ଜାଗାକୁ ହାତରେ ଘୋଡ଼େଇ କି ଠିଆ ହେଲା ।)

ସରପଞ୍ଚ : କିରେ ସେ ଚିରାକୁ ନୁଖେଉଚୁ କ'ଣ ? ସେଇ ଚିରା ଜାଗାର ଫଟ ନିଆଯିବ, ହାତ କାଢ଼ ।

ନିର୍ଦ୍ଦେଶକ : (ପୁଣି ନଖିଆ କାନ୍ଧରୁ ଗାମୁଛାଟା ଝାମ୍ପିନେଇ ଚିରି ପକେଇଲେ)

ନଖିଆ : [ଚିତ୍କାର କରି] ମୋ ଗାମୁଛା ଚିରନା ବାବୁ, ମୋର ଆଉ ମୋଟେ ଗାମୁଛା ନାହିଁ । ବାବୁ ମୋ ଗାମୁଛା ।

ପ୍ରଯୋଜକ : ତମେ ବ୍ୟସ୍ତ ହୁଅନା । ମୁଁ ତୁମକୁ ଆଉ ୧୫ଟଙ୍କା ଦେବି । ତୁମେ ନୂଆ ଗାମୁଛାଟାଏ କିଣିବ ।

ସରପଞ୍ଚ : କିରେ ତୁ ବୋକାଟାଏ କିରେ ? ପୁରୁଣା ବଦଳରେ ତତେ ନୂଆ ଲୁଙ୍ଗି ଗାମୁଛା, ମିଳିବ । ତୁ ଏମିତି ମୁହଁ ଶୁଖେଉଚୁ କ'ଣ ? ତୋର କେତେ ହେଲା ? ସିଏ ଦିଇଣ, ଶହେ ଏମିତି ତିନିଶ । ଇଏ ତିରିଶ ପନ୍ଦର ମିଶି ପଇଁଚାଳିଶ୍ । ଏମିତି ସବୁ ସବୁ ମିଶି ହେଲା ତିନିଶ ପଇଁଚାଳିଶ ।

ନିର୍ଦ୍ଦେଶକ : ନିଅ ତମ ଗାମୁଛା । ପକା କାନ୍ଧରେ । ହଁ ସେମିତି ପକା । ଚିରଟା ଆଗକୁ ରହୁ । ଠିକ୍ ଅଛି ତମେ ଏଇଠି ପିଣ୍ଡା ଉପରେ ବସ । ଏଇ ଆଡ଼କୁ ଅନା । ମୁଁ ଯାହା ପଚାରିବି ଜମା ନଡ଼ରିକି କହିବ । [ନଖିଆକୁ ନିର୍ଦ୍ଦେଶକ ବସାଇ ଦେଲେ] ହଁ, ସେଟ୍, ସେଟ୍ । [ଆସିଷ୍ଟାଣ୍ଟ କ୍ୟାମେରା ମ୍ୟାନ୍ ସ୍ଲେଟ୍ ଦେଖାଇଲେ ।] ରେଡ଼ି, ଓ୍ୱାନ୍, ଟୁ ଥ୍ରି, , ଫୋର୍, ଫାଇଭ, ଆକସନ ।

[କ୍ୟାମେରା ମ୍ୟାନ୍ କ୍ୟାମେରା ଧରି ସୁଟିଂ ଆରମ୍ଭ କଲେ]

ନିର୍ଦ୍ଦେଶକ : [ନଖିଆ ପ୍ରତି] ତୁମର ଜମିବାଡ଼ି କେତେ ?

ନଖିଆ : [ନଖିଆ ଥତମତ ହେଲା । ତଣ୍ଟି ପାଖକୁ ଉଠି ଆସୁଥିବା ଛେପକୁ ଢୋକି ନେଇ ମୁଣ୍ଡ ହଲଇଲା ।]

ନିର୍ଦ୍ଦେଶକ : କଟ୍, କଟ୍ । ଲକ୍ଷ୍ମୀଧର ତୁମକୁ ମୁହଁ ଖୋଲି କହିବାକୁ ପଡ଼ିବ । ମୁଣ୍ଡ ହଲାଇଲେ ଚଳିବ ନାହିଁ ।

ସହଯନ୍ତ୍ର : କିରେ ତୁ ବଡ଼ ପାଟିରେ କହୁନୁ ? ଡରିବାରେ କ'ଣ ଅଛି ? ଏଥର କହିବୁତ ?

ନଖିଆ : ହଁ ।

ନିର୍ଦ୍ଦେଶକ : ସିନ୍ ଓ୍ୱାନ, ସଟ୍ ଟୁ, ଟେକ ଟୁ । ସ୍ଲେଟ୍ ଦେଖାନ୍ତୁ, ସ୍ଲେଟ । ବି କୁଇକ୍ । (ଆସିଷ୍ଟାଣ୍ଟ କ୍ୟାମେରା ମ୍ୟାନ ସ୍ଲେଟ ଦେଖାଇଲେ – ସେଥିରେ ଲେଖାଥିଲା – ସିନ୍ - ଓ୍ୱାନ, ସଟ-ଟୁ, ଟେକ୍-ଟୁ)

ନିର୍ଦ୍ଦେଶକ : ରେଡ଼ି, ଓ୍ୱାନ, ଟୁ, ଥ୍ରି, ଫୋର୍, ଫାଇଭ୍ ଆକସନ୍ । ତୁମର ଜମିବାଡ଼ି କେତେ ?

ନଖିଆ : ଜମା ନାହିଁ ।

ନିର୍ଦ୍ଦେଶକ : ତୁମେ ତାହେଲେ ଚଳୁଚ କେମିତି ?

ନଖିଆ : କାମ କରି ।

ନିର୍ଦ୍ଦେଶକ : କି କାମ କର ? ବିଲ ବାଡ଼ି କାମ ?

ନଖିଆ : ହଁ ।

ନିର୍ଦ୍ଦେଶକ : ତୁମକୁ କ'ଣ ସବୁ ଦିନେ କାମ ମିଳେ ?

ନଖିଆ : ନା ରୁଷ ବେଳେ ମିଳେ । ଧାନ କଟା ସଇଲେ ଆଉ କାମ ମିଳେ ନେଇଁ । [ଏଇ ସମୟରେ ଟିମା କ୍ୟାମେରା ଜୋନ୍ ଭିତରକୁ ପଶି ଆସିଲା ।]

ନିର୍ଦ୍ଦେଶକ : [ଟିମାକୁ କହିଲେ] ବସ ବାବୁ ! ସେଇଠି ବସ ।

[ଟିମା ତା ବାପା କୋଳରେ ବସିଲା] ତମ ନାଆଁ କ'ଣ ?

ଟିମା : [ଟିମା କିଛି ନ କହି ଲାଜ କଲା]

ନଖିଆ : କହୁନୁ, ତୋ ନାଆଁଟା କଇଦେ ।

ନିର୍ଦ୍ଦେଶକ : ସୁନା ପିଲା ନାଆଁ କହି ଦିଅନ୍ତି ।

ଟିମା : ହାତରେ ମୁହଁ ଲୁଗ୍ଇଲା]

ନଖିଆ : [ଟିମାର ମୁହଁରୁ ହାତ କାଢ଼ି] ମୁହଁ ଉପରୁ ହାତ କାଢ଼ । କହ କହୁ ନଉଁ ? ତୋ ନାଆଁଟା କଇଦେ ।

ନିର୍ଦ୍ଦେଶକ : ତମ ନାଆଁ କ'ଣ କୁହ ।

ଟିମା : ଟିମା ।

ନିର୍ଦ୍ଦେଶକ : ହଉ, ତମେ ସୁନା ପିଲା । ଚୁପ୍ ହୋଇ ବସ । ଆଚ୍ଛା ଲକ୍ଷ୍ମୀଧର ତୁମ ପିଲମାନେ ପାଠ ପଢୁଛନ୍ତି ନା ନାହିଁ ?

ନଖିଆ : ନା ।

ନିର୍ଦ୍ଦେଶକ : ଏବେ ପଢୁ ନାହାଁନ୍ତି ନା ଆଦୌ ସ୍କୁଲ ଦେଖି ନାହାଁନ୍ତି ?

ଟିମା : ମୁଁ ଇସ୍‌କୁଲ ଦେଖିଚି । ମୋ ଦେଇ ଦେଖିଚି । ଆମ ଗାଆଁ ବରଗଛ ମୂଳେ ଇସକୁଲ ଅଛି । ତମେ ଦେଖିନକି ?

ନିର୍ଦ୍ଦେଶକ : (ମୁରୁକି ହସି) ତୁମେ ସେ ସ୍କୁଲ ଭିତର ଦେଖିଚ ?

ଟିମା : ନାଇଁ ।

ନିର୍ଦ୍ଦେଶକ : ସ୍କୁଲ ଭିତର ଦେଖିବାକୁ ତମର ମନ ହୁଏ ନାହିଁ ?

ଟିମା : [ମୁଣ୍ଡ ହଲାଇ ମନା କଲା ।]

ନିର୍ଦ୍ଦେଶକ : କାହିଁକି ମନ ହୁଏନା ?

ଟିମା : ତା ଭିତରେ ମାଷ୍ଟର ବାଡ଼ାଏ ।

ନିର୍ଦ୍ଦେଶକ : ନା, ମାଷ୍ଟର ସବୁ ପିଲାଙ୍କୁ ବାଡ଼ାନ୍ତି ନାହିଁ । ଯିଏ ଦୁଷ୍ଟ ହୁଏ, କଥା ମାନେ ନାହିଁ କି ପଢ଼ା କରେ ନାହିଁ, ତାକୁ ମାଷ୍ଟର ବାଡ଼ାନ୍ତି । ତୁମେ ଦୁଷ୍ଟ କି ? [ଟିମା ଏଥର ଲାଜରେ ନଖିଆ କୋଳରେ ମୁହଁ ଲୁଗାଇଲା ।] ଆଚ୍ଛା ଲକ୍ଷ୍ମୀଧର, ତମେ ଏଥର କୁହ – ତୁମ ଜୀବନର ସ୍ୱପ୍ନ କ'ଣ ?

ନଖିଆ : ମୁଁ ଦିନଯାକ ଖଟି ଖଟି ଆସିକି ହାଲିଆ ହୋଇ ଶୋଇ ପଡ଼େ । ଏକା କରରେ ମୋର ଗତି ପାଇଯାଏ । ନିଦ ପାଇଁତ ଗତି ନିଅଣ୍ଟ ହୁଏ । ସପନ ପାଇଁ ଗତି ଆସିବ କୋଉଠୁ ?

ନିର୍ଦ୍ଦେଶକ : ନା, ମୁଁ ସେ ସପନ କଥା କହୁନାହିଁ ।

ନଖିଆ : ଆଉ କୋଉ ସପନ ?

ନିର୍ଦ୍ଦେଶକ : ମୁଁ ପଗ୍ଧୁଚି ଜୀବନରେ କ'ଣ କ'ଣ କରିବାକୁ ତୁମେ ଆଶାରଖିଛ ? ଏଇ ଯେମିତି ଭଲ ଘର ତୋଳିବା, ଜମିବାଡ଼ି କିଣିବା, ସୁନା ଗହଣା କରିବା ଇତ୍ୟାଦି ।

ନଖିଆ : ପେଟ ନିଆଁରେ ଆମର ସବୁ ପୋଡ଼ି ପାଉଁଶ ହେଇ ଯାଉଚି । ଆମ ଆଖିରେ ସବୁବେଳେ ଗୋଟିଏ ସପନ – କାଲି ଆମ ପିଲା କ'ଣ ଖାଇବେ ? ଗ୍ଭଉଳ, ତେଲ, ଲୁଣ, ଜିରା, ହଳଦୀ କୋଉଠୁ ଆଣିବି ?

ନିର୍ଦ୍ଦେଶକ : ଓକେ । ସଟ୍ ଟୁର ଟେକ ଟୁ ଓକେ । ଏଥର ସଟ୍ ଥ୍ରି ରେଡ଼ିକର ।

ପ୍ରଯୋଜକ : ସଟ୍ ଥ୍ରିରେ କ'ଣ ଅଛି ?

ନିର୍ଦ୍ଦେଶକ : ଲକ୍ଷ୍ମୀଧରର ସ୍ତ୍ରୀ ଆଉ ଝିଅର ସାକ୍ଷାତକାର ନେବା । ତା ସ୍ତ୍ରୀକୁ ମେକ୍ ଅପ୍ ମାର, ଶରତ ବାବୁ !

ମେ. ମ୍ୟା. : ସାର୍ ।

ନିର୍ଦ୍ଦେଶକ : ଯା ଶୀଘ୍ର ଲକ୍ଷ୍ମୀଧର ସ୍ତ୍ରୀର ମେକ୍‌ଅପ୍ ସାର ।

ସରପଞ୍ଚ : ନଖିଆ ମହିକି ଡାକ । କିରେ ଅନେଚୁ କ'ଣ ? ଆରେ ଯା' ଡାକି ଆଣ । କାମ ସଇଲେ ବାବୁମାନେ ଯିବେନା, ତୁ ଏମିତି ମଠ, ମଠ, କାଠ, କାଠ ହେଲେ ଚଳିବ ?

ନଖିଆ : ଟିମା ଯା ତୋ ବୋଉକୁ ଡାକ ।

ଟିମା : ଯାଉଚି ।

ସରପଞ୍ଚ : ତା ସାଙ୍ଗରେ ତୋ ଭଉଣୀକି ଡାକି ଦେଇ ଥିବୁ ।

[ଟିମା ଘର ଭିତରକୁ ଗଲା ସମସ୍ତେ ତା ଆଡ଼କୁ ଅନାଇଁ ରହିଲେ । ଟିମା ମହି ଓ ସେବତୀକୁ ଟାଣି ଟାଣି ଆଣିଲା । ସେମାନେ କୁଣ୍ଠିତ ପାଦରେ ଆସୁଥିଲେ]

ସରପଞ୍ଚ : କିଲେ ଜଲଦି ଜଲଦି ଗୁଛି ଆସୁନା, ଏମତି ଗାଈ ବାଛୁରୀ ପରି ପଛକୁ ଓଟାରୀ ହଉଚ କ'ଣ ? କାମ ସଇଲେ ବାବୁମାନେ ପରା ଭୁବନେଶ୍ୱର ଯିବେ ।

ନିର୍ଦ୍ଦେଶକ : ଶରତ ବାବୁ ! ଇଗା ମେକ୍‌ଅପ୍ । ବି କୁଇକ ।

ମହି : ନାଇଁ ମୁଁ ସେଗୁଡ଼ ବୋଳି ହେବି ନେଇଁ । ମୋ ଫଅଟ ନ ଉଠୁ ପଛେ, ମୁଁ ସେ ହାଡ଼ କଙ୍କାଳ ବେଶ ହେବି ନେଇଁ ।

ପ୍ରଯୋଜକ : ଇଏତ ବଡ଼ ମୁସିଲ୍ କଥା । ଜଣେ ମେକ୍‌ଅପ୍ ନେଲା, ଆଉ ଜଣେ ନ ନେଲେ ହବ କେମିତି ? ସରପଞ୍ଚ ବାବୁ !

ସରପଞ୍ଚ : ସାର୍ ।

ପ୍ରଯୋଜକ : ଆପଣ ଆମକୁ ବଡ଼ ଅଡୁଆ ଜାଗାରେ ପକାଇଲେ ।

ସରପଞ୍ଚ : ଆପଣ ବ୍ୟସ୍ତ ହୁଅନ୍ତୁ ନେଇଁ ସାର୍ । ସବୁ ଠିକ୍ ହେଇଯିବ । ନଖିଆ ! ଏ ନଖିଆ !

ନଖିଆ : ଆଜ୍ଞା ।

ସରପଞ୍ଚ : ଆଛା, ହଜୁରରେ କାମ ଚଳିବ ନେଇଁ । ତୋ ଘରିଜାକୁ ବୁଝା ।
ନଖିଆ : ମୁଁ କ'ଣ କରିବି, ସିଏତ ମଙ୍ଗୁ ନେଇଁ ।
ପ୍ରଯୋଜକ : ସରପଞ୍ଚ ବାବୁ ! ତାଙ୍କୁ କୁହ ଆଉ ଶହେ ଟଙ୍କା ଅଧିକା ଦିଆଯିବ । ମେକ୍ଅପ୍ ପାଇଁ ରେଡ଼ି ହୋଇ ପଡ଼ନ୍ତୁ ।
ସରପଞ୍ଚ : କିରେ ନଖିଆ, ମୋ ମୁହଁକୁ କ'ଣ ଏମିତି ବଇ ବଲକି ଅନେଇଚୁ ? ଶୁଣିଲୁ ନା ନାଇଁ ?
ନଖିଆ : କ'ଣ ?
ସରପଞ୍ଚ : ବାବୁ ପର କହିଲେ ଆଉ ଶହେ ଟଙ୍କା ଅଧିକା ଦେବେ । ଯା, ତୋ ଘରିଜାକୁ ବୁଝା ।
ନଖିଆ : ଆଉ ଶହେ ଟଙ୍କା ଦେବେ ?
ସରପଞ୍ଚ : ହଁ ଆଉ ଶହେ ଟଙ୍କା ।
ନଖିଆ : ହଉ ମୁଁ ବୁଝଉଚି । (ନଖିଆ ଉଠିକି ମନ୍ଦି ପାଖକୁ ଗଲା)
ପ୍ରଯୋଜକ : ଶରତବାବୁ ! ଆପଣ ଠିଆ ହେଇ କାହିଁକି ? ମେକ୍ଅପ୍ ବାକ୍ସ ନେଇ ତା ପାଖକୁ ଯାଆନ୍ତୁ । [ଶରତବାବୁ ମେକ୍ଅପ୍ ବାକ୍ସ ଧରି ଗଲେ, ମନ୍ଦି ପାଖରେ ଥୋଇଲେ ।
ନଖିଆ : [ମନ୍ଦି ପ୍ରତି] ସେଇଠି ଅଣ ଆଡ଼ିଆକି ବସ ।
ମନ୍ଦି : ନା, ମୁଁ ସେ ଗୁଗ ମୁହଁରେ ମାରିବି ନେଇଁ । ତମ ଦିହ ମୁହଁ କ'ଣ ଦୁଉଚି ? ଛି ଛି ଏମିତି ବେଶ ହେଇ କିଏ ଫଅଟ ଉଠାଏ ? ମୁଁ ମୋର ଉଠେଇବି ନେଇଁ ।
ନଖିଆ : ଆଉ ଟିକେ ପରେ ଧୋଇଦେଲେ ଛାଡ଼ି ଯିବ ।
ସେବତୀ : ନାଇଁ ବାପା । ବୋଉ ସେ ଗୁଗ ମୁହଁରେ ମାରିବ ନେଇଁ ।
ନଖିଆ : କିଲେ ହୁଣ୍ଡି, କଳା ଟିକେ ମୁହଁରେ ମାରିଦେଲେ କ'ଣ ହେଇ ଯାଉଚି ? ଆହୁରି ଶହେ ଟଙ୍କା ଦେବେ । [ମନ୍ଦିକି ଟାଣିକି ବସାଇଲା] ବସ, ସେଇଠି ବସ । ଝଅଟ ବସ ମ । ଏମିତି କାଠ କାଠ କାଇଁକି ହଉଚୁ ?
ମନ୍ଦି : ନାଇଁ, ମୁଁ ମୋର ସେମିତି ହାଡ଼ୁ ଜଙ୍କାଳ ବେଶ ହେବି ନେଇଁ ।
ନଖିଆ : ଥୋଇବି ଗୋଟେ ବାଆଁ ହାତିଆକି ଯେ ନାଇଁ ମୋର, ନାଇଁ ମୋର ଛାଡ଼ି ଯାଇଥିବ । (ମାରିବାକୁ ବାଆଁହାତ ଉଠାଇଲା ।) ବସୁଚୁନା ଏଇନା ? ବସ କହୁଚି । ବସ ।

ମନ୍ଦି : (ବେଡ଼ ପାଟିରେ କାନ୍ଦି ଉଠିଲା)

ନକ୍ଷିଆ : ଚୁପ୍ କର୍ । (ମନ୍ଦି କାନ୍ଦ ବନ୍ଦ କରି ସକ୍ସକ୍ ହେଲା) ସେ ସକ ସକ ବନ୍ଦ କର । ବସ୍ । ବସ କହୁଚି ।
[ମନ୍ଦି ଡ଼ରି ଡ଼ରି ବସିଲା । ସେମିତି ସକ ସକ ହୋଇ କାନ୍ଦୁଥାଏ । ମେକ୍ଅପ୍ ମ୍ୟାନ୍ ମେକ୍ ଅପ୍ କରିବାକୁ ପ୍ରସ୍ତୁତ ହେଉଛି । ଏହି ସମୟରେ ଗାଆଁ ଲୋକଙ୍କ ମେଳରୁ ଶୁଭେନ୍ଦୁ ବାହାରିଲା । ମେକଅପ୍‌ମ୍ୟାନକୁ ଠେଲି ଦେଇ ମେକଅପ୍ ବକ୍ସ ଛଡ଼ାଇ ଆଣିଲା ।]

ଶୁଭେନ୍ଦୁ : ଏଠି ଏ ସବୁ କ'ଣ ଚାଲିଛି ? ଆପଣମାନଙ୍କୁ କିଏ କହିଲା ଆମ ଗାଆଁରେ ପଶି ଏସବୁ କାମ କରିବାକୁ ? [ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅନାଇଁ ରହିଲେ]

ସରପଞ୍ଚ : [ଶୁଭେନ୍ଦୁ ହାତରୁ ମେକ୍ଅପ୍ ବକ୍ସ ଛଡ଼ାଇଲେ] କିରେ ଶୁଭେନ୍ଦୁ ଇଏ କ'ଣ ? ଏମାନେ ସବୁ ଭଦ୍ର ଲୋକ । ଆମ ଅଞ୍ଚଳର, ଆମ ଗାଆଁର ଅତିଥି । ଏମିତି ଛଡ଼ା ଛଡ଼ି କ'ଣ କରୁଛୁ ?

ଶୁଭେନ୍ଦୁ : ମୁଁ ତୁମକୁ ପଚାରୁଚି, ଏ କ'ଣ ହେଉଛି ? ଏସବୁର ଫଟ ଉଠେଇ ସିନେମା କରିବାକୁ ଏମାନଙ୍କୁ କିଏ ଅନୁମତି ଦେଲା ?

ସରପଞ୍ଚ : ତୁ ପିଲା ଲୋକ, କିଛି ବୁଝିନାହୁଁ । ଏସବୁ ଆମ ଭଲ ପାଇଁ, ଆମ ଅଞ୍ଚଳର ଉନ୍ନତି ପାଇଁ ।

ଶୁଭେନ୍ଦୁ : ତୁମେ ଚୁପ୍‌କର । ମୁଁ ବେଶ୍ ଜାଣିଛି । ଏମାନେ ସବୁ ମତଲବୀ ସୌଦାଗର । ଦରିଆପାରି ବେପାର ଏମାନଙ୍କର ।

ସରପଞ୍ଚ : [ସରପଞ୍ଚ ଶୁଭେନ୍ଦୁ ପାଖକୁ ଲାଗିଯାଇ ତା କାନ ପାଖରେ ଚାପା କଣ୍ଠରେ କହିଲେ] ଏମାନେ ତମ କ୍ଲବକୁ ପାଞ୍ଚଶ ଟଙ୍କା ଦେଇଚନ୍ତି ।

ଶୁଭେନ୍ଦୁ : [ଚଡ଼ା ଗଳାରେ] ସେ ଟାଉଟରୀ ଧନ୍ଦା ମୋ ଆଗରେ କୁହନା । ଏସବୁ ତମରି ଫନ୍ଦି । ତମେ କେତେ ହଜାର ପକେଇଚ ? ତୁମ ଭାଇରେ ଗୋଡ଼ ଗଳେଇବା ଲୋକ ମୁଁ ନୁହଁ ।

ସରପଞ୍ଚ : ମୁହଁ ସମାଳି କଥା ବାର୍ତ୍ତା କର କହି ଦଉଚି । ତୁ ଦେଖିଚୁ ମୁଁ ଏମାନଙ୍କଠୁଁ ଟଙ୍କା ପକେଇଚି ? ଆରେ ... ... କିଛି ନ କହିବାରୁ ଯା ମୁହଁ ପାଇ ଯାଉଚି ।

ଶୁଭେନ୍ଦୁ : ମୁଁ ସବୁ ଖବର ରଖିଚି । ଆଜି ଲୋଭରୁ ଲୋଭରୁ ତମେ ଏମାନଙ୍କୁ ନକ୍ଷିଆର

ଘର ଦେଖେଇ ସାରିବା ପରେ ତମକୁ ଏମାନେ ଦି ବିଡ଼ା ନୋଟ ଦେଇଚନ୍ତି । ଏକଥା ସପନି ବଡ଼ପା ପୁଅ ସାଇଙ୍କ ଦେଖିଚି ।

ସରପଞ୍ଚ : ଏଗୁଡ଼ା ନିହାତି ମିଛ କଥା ।

ଶୁଭେନ୍ଦୁ : ଡାକିବି ସାଇଙ୍କୁ ?

ସରପଞ୍ଚ : କିଏ କ'ଣ କହିଲା ମୋର ସେଥିରେ କ'ଣ ଯାଉଚି । ମୁଁ କାହାଠୁ କିଛି ନେଇ ନାହିଁ । ଏ ବାବୁମାନଙ୍କୁ ପଚାରୁ ନହିଁ, ସେମାନେ ମତେ ଟଙ୍କା ଦେଇଚନ୍ତିନା ନାହିଁ ।

ଶୁଭେନ୍ଦୁ : ଏ ସବୁ ପ୍ରହସନ ବନ୍ଦ୍ କର । ଏମିତି ମଘା ଯଗ୍ୟରେ କାହାର ପେଟ ପୂରେ ନାହିଁକି କୌଣସି ଅନୁଷ୍ଠାନର ଉନ୍ନତି ହୁଏ ନାହିଁ । କାଉ, କୁକୁର ଆଗରେ ଖୁଦ କଣିକାଏ କଣିକାଏ ବିଞ୍ଚିଦେଇ ଏମାନେ ଲକ୍ଷ ଲକ୍ଷ ଟଙ୍କାର ଫାଇଦା ଉଠାଇବେ ।

ନିର୍ଦ୍ଦେଶକ : ଶୁଣନ୍ତୁ ଶୁଭେନ୍ଦୁ ବାବୁ ! ଆପଣ ଆମକୁ ଭୁଲ ବୁଝୁଛନ୍ତି ।

ଶୁଭେନ୍ଦୁ : ଆଉ ଠିକ୍‌ଟା ଟା ହେଲେ କ'ଣ ?

ପ୍ରଯୋଜକ : ଆପଣଙ୍କ ଅଞ୍ଚଳର ଦାରିଦ୍ର୍ୟର ଫଟୋ ଉଠାଇ ଆମେ ଗୋଟିଏ ଡକୁମେଣ୍ଟାରୀ ପିକ୍‌ଚର କରିବୁ ।

ଶୁଭେନ୍ଦୁ : ସେ କଥା ମୁଁ ବୁଝିଛି ।

ନିର୍ଦ୍ଦେଶକ : ଏଇ ପିକଚର ଜରିଆରେ ଆପଣଙ୍କ ଅଞ୍ଚଳର ଦାରିଦ୍ର୍ୟ ପ୍ରତି ସରକାରଙ୍କର ଦୃଷ୍ଟି ଆକର୍ଷଣ କରିବୁ । ସରକାର ଆପଣଙ୍କ ଅଞ୍ଚଳର ଉନ୍ନତି କରିବା ପାଇଁ ଯୋଜନା କରିବେ ।

ସରପଞ୍ଚ : ଏ ଅଞ୍ଚଳର ଲୋକମାନଙ୍କ ଅବସ୍ଥାର ଉନ୍ନତି ପାଇଁ କଳ କାରଖାନା କରିବେ । ରାସ୍ତାଘାଟ ତିଆରି କରିବେ । କୃଷିର ଉନ୍ନତି ପାଇଁ ଜଳ ସେଚନ ବ୍ୟବସ୍ଥା କରିବେ । ଲୋକମାନେ କାମ ପାଇବେ । ଆମ ଅଞ୍ଚଳରେ ଆଉ ଜଣେ ହେଲେ ଗରିବ ରହିବେ ନାହିଁ ।

ଶୁଭେନ୍ଦୁ : ଏ ସବୁ ଡାହାମିଛ । ପ୍ରତାରଣା । ଆମ ଏ ଅଞ୍ଚଳକୁ କେତେ ମନ୍ତ୍ରୀ, କେତେ ପ୍ରଧାନ ମନ୍ତ୍ରୀ ଆସନ୍ତୁ ଆସିଛନ୍ତି । ଆମର ଅଭାବ, ଅସୁବିଧା କଥା ଆମକୁ ପଚାରି ବୁଝିଛନ୍ତି । ଆମେ ସାହାଯ୍ୟ ପାଇବା ଆଶାରେ ଆମ ଦେହର, ଆମ ଘରର ଚିରା, ଫଟା ଜାଗାମାନ ସେମାନଙ୍କୁ ବାରମ୍ବାର ଦେଖାଇଛୁ । କିନ୍ତୁ କି ଉନ୍ନତି ହୋଇଛି ଆମର ? କିଏ

ଆମ ପାଇଁ କ'ଣ କରିଚି ?

ସରପଞ୍ଚ : ଏ ଯାଏ ଆମ ଅଞ୍ଚଳର କିଛି ଉନ୍ନତି ହୋଇ ନାହିଁ ବୋଲିତ ଏ ବାବୁମାନେ ଆସିଛନ୍ତି ସରକାରଙ୍କୁ ସେ କଥା କହିବେ । ନ ମାନିଲେ ଆମ ଅଞ୍ଚଳର ଅଙ୍ଗୋ ଏଇ ସିନେମାରୁ ଦେଖାଇବେ ।

ଶୁଭେନ୍ଦୁ : ସେ ଗଳ୍ପକି ରଖିଦେଇଥା । ଆମ ଅଞ୍ଚଳର ଉନ୍ନତି ପାଇଁ ଏମାନେ ହାତରୁ ପଇସା ଖର୍ଚ୍ଚ କରି ଏତେ ବାଟ ଆସିଛନ୍ତି ? ଏସବୁ ମିଛ କଥା । ଏମିତି ଭଲଲୋକ । ଏମିତି ନିସ୍ୱାର୍ଥପର ଲୋକ ଏବେ ସ୍ୱର୍ଗରେ ମଧ୍ୟ ନାହାଁନ୍ତି ।

ସରପଞ୍ଚ : ତୁ ପିଲାଲୋକ ସେ ସବୁ କୁଆଡୁ ବୁଝିବୁ ? ଏ କଳିକାଳରେ ମଧ୍ୟ ଏମିତି କିଛି ଭଲଲୋକ ଅଛନ୍ତି ବୋଲି ଦୁନିଆ ରହିଛି । ନହେଲେ କେଉଁ ଦିନରୁ ପୃଥୀ ପ୍ରଳୟ ହେଇ ଯାଇସାରନ୍ତାଣି ।

ଶୁଭେନ୍ଦୁ : ଏ ସବୁ ବାଜେ କଥା ବନ୍ଦ୍ କର । ତମ ଗୁଣ ଗ୍ରାମ ଆମକୁ ଅଜଣା ନାହିଁ । ଟଙ୍କା ପାଇଲେ ତମେ ମିଛକୁ ଗୋଳେଇକି ପିଇଯିବ ।

ସରପଞ୍ଚ : ଶୁଭେନ୍ଦୁ ! ତୁ କାହାକୁ ଏ କଥା କହୁଚୁ ? ତୁ ହୋସ୍‌ରେ ଅଛୁତ ?

ଶୁଭେନ୍ଦୁ : ମୁଁ ଠିକ୍ ଅଛି । କିନ୍ତୁ ଟଙ୍କା ଲୋଭରେ ତମେ ନିଶା ଗ୍ରସ୍ତପରି କଥା ବାର୍ତ୍ତା କରୁଛ ।

ସରପଞ୍ଚ : (ଚିତ୍କାର କରି) ଶୁଭେନ୍ଦୁ !

ଶୁଭେନ୍ଦୁ : ଏ ନାଲି ଆଖି କାହାକୁ ଦେଖାଉଛ ? ମୁଁ ତୁମକୁ ଚିହ୍ନିଛି । ଆଉ ଏମାନଙ୍କୁ ସମସ୍ତଙ୍କୁ ଚିହ୍ନିଛି । ଏ ସିନେମା ଆମ ସରକାରଙ୍କୁ ଦେଖାଇବା ପାଇଁ ଏମାନେ ତିଆରି କରୁ ନାହାଁନ୍ତି ।

ସରପଞ୍ଚ : ଆଉ କ'ଣ ପାଇଁ କରୁଛନ୍ତି ?

ଶୁଭେନ୍ଦୁ : ପଗ୍ରର ତୁମଭ ଏ ମତଲବୀ ସୌଦାଗରମାନଙ୍କୁ, ଏମାନେ ଏ ଫଟକୁ ନେଇ ବିଦେଶରେ ଲକ୍ଷ, ଲକ୍ଷ ଟଙ୍କାରେ ବିକିବେ । ଏଇନା ଆମ ଦେଶର ବଡ଼ ସମ୍ପଦ ହେଉଛି ଆମର ଏଇ ଦାରିଦ୍ର୍ୟ । ଆମ ଦେଶର ସବୁ ଅର୍ଥ ଏମାନେ ଲୁଟି ଖାଇ ସାରିବା ପରେ ଏମାନଙ୍କର ଶାଗୁଣା ଦୃଷ୍ଟି ପଡ଼ିଛି ଆମ ଦାରିଦ୍ର୍ୟ ଉପରେ । ଏଇଆକୁ ପଣ୍ୟକରି ଏମାନେ ବିଦେଶରେ ବେପାର କରି ଲକ୍ଷପତିରୁ କୋଟିପତି ହେବେ ।

ପ୍ରଯୋଜକ : ଏସବୁ ନିହାତି ପିଲାଳିଆ କଥା । ବିଦେଶରେ ଖୁବ୍ ଭଲ ଭଲ

ସିନେମା ଥାଉଁ ଥାଉଁ ଯେମାନେ ଆମଠୁ ଏ ଧରଣର ସିନେମା କାହିଁକି କିଣିବେ ?

ଶୁଭେନ୍ଦୁ : ବିଦେଶର ଲୋକମାନେ ଧନ ସମ୍ପଦର ପ୍ରାଚୁର୍ଯ୍ୟରେ ଭସୁଛନ୍ତି । ଦାରିଦ୍ର୍ୟ କ'ଣ ସେମାନେ ଜାଣନ୍ତିନାହିଁ । ଗରିବ ମଣିଷଟିଏ ସେମାନେ ତାଙ୍କ ଜୀବନ କାଳ ଭିତରେ ଦେଖି ନାହାନ୍ତି । ଆପଣମାନେ ଏଇ ଯେଉଁ ସିନେମା କରୁଛନ୍ତି ସେଥିରୁ ଆମର ଭଙ୍ଗାରୁଜା, ମାଟି ଝାଟିର ଘର, ଶୀରକ ଲୋଗ୍ କ୍ଳୋଗ୍ ଦୁର୍ବଳ ଶରୀର ଦେଖି ଦାରିଦ୍ର୍ୟ କ'ଣ ସେମାନେ ଚିହ୍ନିବେ । ଆମ ଭାରତ ଗୋଟିଏ ଦରିଦ୍ର ଦେଶ ବୋଲି ସାରା ପୃଥିବୀରେ ପରିଚିତ ହେବ ।

ନିର୍ଦ୍ଦେଶକ : ମୁଁ ଭାବୁଛି କୌଣସି ରାଜନୀତିବାଲା ଆପଣଙ୍କୁ ବିଭ୍ରାନ୍ତ କରିଛି । ରାଜନୀତି ବାଲାଙ୍କ ଘୋଷା ଡାଇଲଗ୍ ଆପଣ ଏଠି ଝାଡୁଛନ୍ତି ।

ଶୁଭେନ୍ଦୁ : ରାଜନୀତି ବାଲାଙ୍କ କଥା କହି ଏହାକୁ ଆପଣ ରାଜନୀତି ରଙ୍ଗ ଦେଇ ମୋତେ ଫାଙ୍କି ଦେବାକୁ ବସିଛନ୍ତି । ମୁଁ ଆପଣଙ୍କ ମତଲବ ବୁଝିଛି । ଆମ ଦାରିଦ୍ର୍ୟକୁ ଦେଖି ଅନ୍ୟ ଦେଶର ଲୋକମାନେ ଆନନ୍ଦ ପାଇବେ, ଉପଭୋଗ କରିବେ । ଆଉ ଆପଣମାନେ ଆମର ଦାରିଦ୍ର୍ୟକୁ ବିଦେଶରେ ବିକି କୋଟିପତି ହେବାର ସ୍ୱପ୍ନ ଦେଖିବେ ? ନା, ମୁଁ ଏହା କଦାପି କରାଇ ଦେବି ନାହିଁ । [କ୍ୟାମେରା ଛଡ଼ାଇଲା । ସେମାନେ ପ୍ରତିବାଦ କଲେ]

ସରପଞ୍ଚ : କିରେ ଶୁଭେନ୍ଦୁ ! ଏମିତି ଛଡ଼ା ମଡ଼ା କାହିଁକି କରୁଚୁ ? କଥାଟା କ'ଣ ହେଉଚି ବୁଝିବା ରହ ।

ନଖିଆ : ସରପଞ୍ଚ ବାବୁ ମୋ ଟଙ୍କା ଦିଅ ।

ସରପଞ୍ଚ : ସିଏତ ସିନେମା କରେଇ ଦଉ ନେଇଁ । ତତେ ଟଙ୍କା କିଏ ଦବ ?

ନଖିଆ : ମୋର ସେଥିରେ ଦୋଷ କ'ଣ ? ମୁଁ କଣ କରିବି ? (ପ୍ରଯୋଜକ ପ୍ରତି) ମୋ ଟଙ୍କା ଦିଅନ୍ତୁ ବାବୁ ।

ପ୍ରଯୋଜକ : ଦେଖୁଚତ ଗଣ୍ଡଗୋଳ ହେଲା । କାମ ସରିଲେ ସିନା ମୁଁ ଦେବି । ଏମିତି ଅଧାରୁ ଭାଙ୍ଗିଲେ ଆମର ସବୁ ବେକାର ହୋଇଯିବ ।

ନଖିଆ : ଟଙ୍କା ନ ଦେଲେ ମୋ ଛୁଆ ପିଲା ଉପାସ ରହିବେ । ମୋ ଟଙ୍କା ଦିଅ ବାବୁ ।

ଶତ୍ରୁଭେଦ : ଏମାନଙ୍କ ପାଖରେ ପେଟ ଦେଖାଇଲେ ତୋ ପେଟ ପୂରିବ ନାହିଁ ନଣିଆ । ତୁ ଏମାନଙ୍କୁ ଚିହ୍ନିନାହୁଁ, ଏମାନେ ତୋଠୁ ଆହୁରି ଭେକିଲ । ଏମାନଙ୍କ ପେଟରେ ସର୍ବଗ୍ରାସୀ ଭେକ ଜଳୁଛି । ଏମାନେ ଜାଲ ବିଛେଇଛନ୍ତି ଏ ସାରା ଦେଶ । ଆମେ ନିଗପଦରେ ପାଦ ଥାପିବାକୁ ତିଳାର୍ଦ୍ଧ ସ୍ଥାନ ନାହିଁ । ସବୁଠି ଏଇମାନଙ୍କ ଜାଲର ଫାନ୍ଦ ଆଁ କରିଛି । ଏମାନେ ସାରା ଦେଶଟାକୁ ଖାଇ ସାରି ଏବେ ଅର୍ଣ୍ଣି ପାତିଛନ୍ତି ବିଦେଶ ଭୂଇଁରେ ।

ପ୍ରଯୋଜକ : ଏ ସବୁ ବାଜେ କଥା ବନ୍ଦ କର । ତୁମେ କିଏ ? ଆମେ ଲକ୍ଷ୍ମୀଧର ଆଉ ତା ଘରର ଫଟୋ ଉଠାଇବୁ, ତମର ସେଥିରେ କ'ଣ ଯାଏ ଆସେ ?

ସରପଞ୍ଚ : ଶତ୍ରୁଭେଦ ତୁ ଏଠୁ ଯା ।

ଶତ୍ରୁଭେଦ : କ'ଣ କହିଲ ? ମୁଁ ଏଠୁ ଯିବି ? ଏଟା କ'ଣ ତମ ଘର ? ଏଟା ନଣିଆ ଘର । ମତେ ଏଠୁ ଉଠେଇବାକୁ ତମେ କିଏ ?

ପ୍ରଯୋଜକ : ଲକ୍ଷ୍ମୀଧର ଟଙ୍କା ନବ ଆମ ଫିଲିମିରେ କାମ କରିବ । ସିଏ ରାଜି ହୋଇଛି ବୋଲି ଆମେ ତା ଦୁଆରକୁ ଆସିଚୁ । ତମେ ବାଧା ଦେବାକୁ କିଏ ?

ଶତ୍ରୁଭେଦ : ଠିକ୍ ଅଛି । ମୁଁ ଆପଣଙ୍କ କଥା ମାନିଲି । ଲକ୍ଷ୍ମୀଧର ଆପଣଙ୍କ ଫିଲିମ୍‌ରେ କାମ କରୁଛି । ଲକ୍ଷ୍ମୀଧର ଏ ଫିଲିମ୍‌ର ହୀରୋ ଆଉ ତା ସ୍ତ୍ରୀ ମନ୍ଦି ହିରୋଇନ୍ । ସେମାନଙ୍କର ପ୍ରାପ୍ୟ କ'ଣ ମୋଟେ ତିନିଶ, ଚାରିଶ ଟଙ୍କା ? ଦଉନା ତାକୁ ତିରିଶ ଚାଳିଶ ହଜାର ଟଙ୍କା । ଦିଅ ।

ସରପଞ୍ଚ : ଟଙ୍କା ଗୁଡ଼ା କ'ଣ ମୋଫତ ପଡ଼ିଛି ? ନଣିଆର ଦିନକୁ ମଜୁରୀ କୋଡ଼ିଏ, ବାଇଶି ଟଙ୍କା । ତାକୁ ଦିଆଯିବ ଚାରିଶ ପଇଁଚାଳିଶ ଟଙ୍କା । ଇଏ କ'ଣ କମ ହେଇଗଲା ?

ଶତ୍ରୁଭେଦ : ତମର ଦିନକୁ ମଜୁରୀ କେତେ ଆଉ ତମେ ଏମାନଙ୍କଠୁ କେତେ ଟଙ୍କା ପକେଇ ଓକିଲତି କରୁଚ ?

ସରପଞ୍ଚ : ତୋର ସେଥିରେ କ'ଣ ଅଛି ? ତୁ କ'ଣ ଏ ଗାଆଁର ମାଲିକ ? ତୁ କାହିଁକି ଏତେ କଥାରେ ମୁଣ୍ଡ ଗଳଉଛ ?

ଶତ୍ରୁଭେଦ : କ'ଣ କହିଲ, ମୋର ଏଥିରେ କିଛି ନାହିଁ ?

ସରପଞ୍ଚ : ତୋର କ'ଣ ଅଛି ।

ଶୁଭେନ୍ଦୁ : କିଏ କହିଲା ମୋର ଏଥିରେ କିଛି ନାହିଁ ବୋଲି ?

ସରପଞ୍ଚ : ମୁଁ କହୁଚି ।

ଶୁଭେନ୍ଦୁ : ଏ ଦାରିଦ୍ର୍ୟ କେବଳ ନଖିଆର ନୁହେଁ । ଆମ ଦେଶର । ଏଥିରେ ଆମ ଦେଶର ମାନ, ସମ୍ମାନ, ଆଉ ସ୍ୱାଭିମାନ ଜଡ଼ିତ । ଏ ବିଷୟରେ କହିବାର ଅଧିକାର ଆମ ସମସ୍ତଙ୍କର ଅଛି ।

ସରପଞ୍ଚ : କିରେ ତୁ କାଲିକା ପିଲା, ମୋ ଆଗରେ କ'ଣ ଭାଷଣ ମାରୁଚୁ ?

ପ୍ରଯୋଜକ : (ସରପଞ୍ଚଙ୍କ ପାଖକୁ ଲାଗିଯାଇ ତା କାନରେ କ'ଣ କହିଲେ )

ସରପଞ୍ଚ : (ଶୁଭେନ୍ଦୁକୁ ଗୋଟିଏ କଣକୁ ଟାଣି ନେଇ) ତୁ ଯଦି କିଛି ନବାକୁ ଚାହୁଁଚୁ ତା ହେଲେ କହୁନର୍ଭି ମୁଁ କରାଇ ଦେବି । ହଜାରେ ନା ଦି' ହଜାରେ ନବୁ ?

ଶୁଭେନ୍ଦୁ : (ବଡ଼ ପାଟିରେ) ତମେ କାହିଁକି ସମସ୍ତଙ୍କୁ ନିଜ ଭଳି ଭାବୁଛ ? ପଇସା ପତ୍ର ଲୋଭରେ ମୁଁ ଦେଶର ମାନ, ସମ୍ମାନକୁ ବିକିଦେଇ ପାରିବି ନାହିଁ ।

ସରପଞ୍ଚ : ସାର୍ ! ଆପଣ ଯା' କଥାକୁ କ'ଣ ପାଇବେ ? ନଖିଆକୁ ପଚାରନ୍ତୁ । ସିଏ ଯଦି ରାଜି ତା ହେଲେ ପୁଣି ସୁଟିଂ ଆରମ୍ଭ କରନ୍ତୁ । ଅଯଥା ସମୟ ନଷ୍ଟ କରନ୍ତୁ ନାହିଁ ।

ନିର୍ଦ୍ଦେଶକ : ଲକ୍ଷ୍ମୀଧର ! ଏଠିକି ଆସ । ଶୁଣ ।

ନଖିଆ : (ନିର୍ଦ୍ଦେଶକଙ୍କ ପାଖକୁ ଯାଇ) କ'ଣ ଆଜ୍ଞା ?

ନିର୍ଦ୍ଦେଶକ : ତମେ କ'ଣ କହୁଚ ? ତମର ଏଥିରେ କିଛି ଆପତ୍ତି ଅଛି ?

ନଖିଆ : (ମୁଣ୍ଡ ହଲାଇ) ନାଇଁ ଆଜ୍ଞା ।

ସରପଞ୍ଚ : ଯାହାର ଫଟ ଉଠିବ ତାରତ ଆପତ୍ତି ନାହିଁ, ଆପଣ ଏ ଫାଲତୁ ଲୋକଙ୍କ କଥା କାହିଁକି ଶୁଣୁଚନ୍ତି ? ପୁଣି ସୁଟିଂ ଆରମ୍ଭ କରନ୍ତୁ ।

ପ୍ରଯୋଜକ : ଶରତ ବାବୁ !

ମେକ୍‌ଅପ୍ ସାର୍ ।

ମ୍ୟାନ

ପ୍ରଯୋଜକ : ଯାନ୍ତୁ ଶୀଘ୍ର ମେକ୍‌ଅପ୍ ଆରମ୍ଭ କରନ୍ତୁ ।

[ମେକଅପ୍ ମ୍ୟାନ୍ ବକ୍‌ସ ଧରି ମନ୍ଦିର ଆଡକୁ ଆଗେଇଲେ । ନଖିଆ

ଆଗରୁ ବଳଦ ଗୋଡ଼ାଇବାକୁ ଆଣି ପିଣ୍ଡାରେ ଯେଉଁ ଠେଙ୍ଗା ରଖିଥିଲା, ତାକୁ ଧରି ଶୁଭେନ୍ଦୁ ସେମାନଙ୍କୁ ବାଡେଇବାକୁ ଉଞ୍ଚେଇଲା ।]

ଶୁଭେନ୍ଦୁ : କିଏ ଆସୁଛ ଆସ । ଯିଏ ସୁଟିଂ କରିବ ତାକୁ ଏଇ ଠେଙ୍ଗାରେ ପିଟି ତା ମୁଣ୍ଡ ଛତୁ କରିଦେବି ।

ସରପଞ୍ଚ : କିରେ ଶୁଭେନ୍ଦୁ ତୋ ମୁଣ୍ଡ ଖରାପ ହେଇ ଗଲା ନା କ'ଣ ?

ଶୁଭେନ୍ଦୁ : ଏଠି ସେ ଶିଖି ମନେଇ କାମ ଚଳିବ ନେଇଁ । ଏ ଦଳଟାଯାକୁ ଧରିକି ତମେ ଏଠୁ ଯିବନା, ଦେଖିବ ଏଇଲେ ? ଏଇ ଠେଙ୍ଗାରେ ପିଟିକି ସମସ୍ତଙ୍କୁ ସାବାଡ କରିଦେବି । [କ୍ୟାମେରା ମ୍ୟାନ୍ କ୍ୟାମେରା ବନ୍ଦ ବାନ୍ଦ କଲା । ତାକୁ ଧମକେଇଲା ଶୁଭେନ୍ଦୁ]

ଶୁଭେନ୍ଦୁ : ଉଠା । ଉଠା ସେ କ୍ୟାମେରା ନହେଲେ ବାଡ଼େଇକି ଉର୍ଗି ଦେବି । ଯାଉଚନା, ଦେଖିବ ଏଇନେ ।

[ନିର୍ଦ୍ଦେଶକ, ପ୍ରଯୋଜକ, କ୍ୟାମେରା ମ୍ୟାନ୍, ମେକଅପ୍ ମ୍ୟାନ୍ ଓ ସରପଞ୍ଚ ସମସ୍ତେ ମାଡ଼ ଭୟରେ ଗ୍ଲିଗଲେ । ଠେଙ୍ଗାଟା ଧରି ଶୁଭେନ୍ଦୁ ଗର୍ଜୁଥାଏ ।]

ନଖିଆ : ଏମାନଙ୍କୁତ ତଡ଼ି ଦେଲ ମୋ ଟଙ୍କା କିଏ ଦବ ? ମୋ ଛୁଆପିଲା ଆଜି କ'ଣ ଖାଇବେ ? ଦେଇ ପାରିବ ତମେ ଗ୍ଚରିଶ ଟଙ୍କା ? ଶହେ ଟଙ୍କା ? ପଗ୍ଚଶ ଟଙ୍କା ?

ଶୁଭେନ୍ଦୁ : (ନୀରବରେ ବାଡ଼ିଧରି ଠିଆ ହୋଇଥାଏ)

ନଖିଆ : ନା, ତମେ କିଛି ଦେଇ ପାରିବ ନେଇଁ, ଖାଲି ବଡ ବଡ଼ କଥା କହିବ । ଦେଶ, ବିଦେଶ କଥାରୁ ମୁଁ କ'ଣ ବୁଝିବି ? କ'ଣ ପାଇବି ? ମୋର ଟଙ୍କା ଦରକାର । ମୋ ଘରେ ଦିଇ ଦିନ ହେଲା ଚୂଲି ଜଳି ନେଇଁ । ମୋ ପିଲା ଛୁଆଙ୍କ ପେଟକୁ ଦାନା ଦବା ପେଇଁ ଆଉ ପିଠିକି ଜନା ଦବା ପେଇଁ ଟଙ୍କା ଦରକାର । ମୋ ପାଖରେ ଦେଶର ଡାକ ଠଉଁ ପେଟର ଡାକ ବଡ଼ । ମୁଁ କେତେ ଆଶା କରିଥିଲି ଟଙ୍କା ପାଇବି । ଦଶ କୋଡ଼ିଏ ନୁହଁ, ଗ୍ଚରିଶ, ପାଆଁଶ ଟଙ୍କା ପାଇବି । ମୋ ଛୁଆ ପିଲାଙ୍କ ପାଇଁ ନୂଆ ଜାମା ପେଣ୍ଟ କିଣିବି । ମୋ ତରିଲା ପେଇଁ ନୂଆ ଦେଢ଼ାଣ କିଣିବି । ବେକକୁ ରୁପା ଚେନେ କେରେ କରିବି । ସବୁ ଯେମିତି

ହାତରେ ଧରା ଦେଇ ହାତକୁ ଖସିଗଲା । ଏଥିରେ ଦେଶର କ'ଣ ଭଲ ମନ୍ଦ ହେଉଥାଆନ୍ତା, ମୁଁ ବୁଝିନେଲି । ସେ କଥା ବୁଝିବାକୁ ମୋର ମୁଣ୍ଡ ନାହିଁ । ହେଲେ ମୁଁ ତ ବୁଝିଲି, ପାଞ୍ଚ ଶ ଟଙ୍କା ପାଇଥାଆନ୍ତି । ସେତକ କିଏ ଦବ ? କୁହ ବାବୁ ସେତକ କିଏ ଦବ ? (ଶୁଭେନ୍ଦୁକୁ ଧରି ହଲେଇ ଦେଲା । ଶୁଭେନ୍ଦୁର ହାତର ଠେଙ୍ଗା ଧୀରେ ଧୀରେ ନଇଁ ଆସୁଥିଲା । ନଣିଆ, ମର୍ଦ୍ଦି, ଟିମା, ସେବତୀ ଲଇଁ ଲଇଁ ହୋଇ ଚାହୁଁଥିଲେ । ଶୁଭେନ୍ଦୁ ହାତରୁ ଠେଙ୍ଗା ପକାଇ ଦେଇ ସେମାନଙ୍କୁ ଅସହାୟ ଆଖିରେ ଚାହିଁଥିଲା ଓ ସେମାନେ କାହିଁବା କେବେ ଶୁଭେନ୍ଦୁକୁ ଚାହିଁଥିଲେ । ସମସ୍ତେ ଗୋଟିଏ ମିନିଟ୍ ପାଇଁ ଫିକା ହୋଇ ଯାଇଥିଲେ )



# ସୂର୍ଯ୍ୟୋଦୟ

(ସାମାଜିକ ନାଟକ)

* ଏହି ନାଟକଟି ୧୯୮୩ ମସିହାରେ ଆକାଶବାଣୀ, କଟକ କେନ୍ଦ୍ରରୁ ସୌଜନ୍ୟରୁ ପ୍ରସାରିତ ।

* ନାଟକଟି ମଞ୍ଚସ୍ଥ କରିବା ପାଇଁ ମାତ୍ର ଗୋଟିଏ ଗୃହଘର ସେଟ୍ ଆବଶ୍ୟକ ।

* ନାଟକଟି ମଞ୍ଚସ୍ଥ କରିବା ପାଇଁ ଦୁଇ ଜଣ ନାରୀ ଚରିତ୍ର ଆବଶ୍ୟକ ।

* ନାଟକଟିର ଅଭିନୟ ସମୟ ଏକ ଘଣ୍ଟା ପନ୍ଦର ମିନିଟ୍ ।

## ଚରିତ୍ର :

* ଗୋବର – ଗାଆଁଲୋକ । ବୟସ ପଇଁଚାଳିଶ । ଅଶିକ୍ଷିତ । କୃଷକ ହେଲେ ବି ନିଜର ଜମି ନ ଥିବାରୁ ବଢ଼େଇ କାମ କରେ । ଅତ୍ୟନ୍ତ ଗରିବ ।

* ଅନାଦି – କୃଷକ । ବୟସ ପଇଁଚାଳିଶରୁ ପଚାଶ ମଧ୍ୟରେ । ଅଶିକ୍ଷିତ । ଟାଉଟରୀ ସ୍ୱଭାବ ।

* ଫକୀର – ଗାଆଁ ଦୋକାନୀ । ବୟସ ଚାଳିଶ ଭିତରେ । ଦରିଦ୍ର ।

* ପରେଶ – ଗାଆଁର ଶିକ୍ଷିତ ଯୁବକ । ବୟସ ୨୫/୨୬ ବର୍ଷ । ଅନାଦିର ପୁଅ ।

* ଚନ୍ଦର – ଛଅ ବର୍ଷର । ଗୋବରର ଦ୍ୱିତୀୟ ପୁତ୍ର ।

* ହୀରା – ସତର/ଅଠର ବର୍ଷର ସୁନ୍ଦରୀ ଯୁବତୀ । ଗୋବରାର ଝିଅ । ଅଳ୍ପ ଶିକ୍ଷିତା ।

* ହୀରବୋଉ– ବୟସ ଚାଳିଶ ଆରପଟେ । ଭଗ୍ନ ସ୍ୱାସ୍ଥ୍ୟ । ଅଶିକ୍ଷିତା ।



# ସୂର୍ଯ୍ୟୋଦୟ

ଗୋବରା ପଧାନର ଘର । ଖୁବ୍ ଗରିବ ଘର । ନଡ଼ା ଛପର, ମାଟି କାନ୍ଥ । ସମୟ ରାତି ଘଡ଼ିଏ । ଗୋବରା ଗାମୁଛା ସିଲେଇ କରିବା ପାଇଁ ଡ଼ିବି ପାଖରେ ବିସି ଛୁଞ୍ଚିରେ ସୂତା ଗଳାଇବାକୁ ବାରମ୍ବାର ଚେଷ୍ଟା କରି ବିଫଳ ହେଉଛି । ତା ଆଖିକି ଗୁଳିଣ୍ଡା ଯୋଗୁ ଭଲ ଦେଖାଯାଉ ନାହିଁ । ଏଇ ସମୟରେ ଆସିଛି ତା' ଝିଅ ହୀରା ।

ହୀରା : ବାପା !

ଗୋବରା : (ସେମିତି ଛୁଞ୍ଚିରେ ସୂତା ପୂରାଉ ପୂରାଉ) ଉଁ.. ।

ହୀରା : କ'ଣ କରୁଚୁ ?

ଗୋବରା : ତୋ ଆଖିକୁ କ'ଣ ଦିଶୁ ନେଇଁ ?

ହୀରା : ସେ ଗାମୁଛାଟାରେ କ'ଣ ଅଛି ଯେ ବସି ସିଲେଇ କରୁଚୁ ? ସେଟାତ ପୋରିହା ହେଇ ଗଲାଣି । କୋର୍‌ରେ ଟିକେ ଚୁପୁଡ଼ି ଦେଲେ ପୁର୍ ପୁର୍‌କି ଚିରି ଯାଉଚି ।

ଗୋବରା : ତୁ ଅମିରିଘର ଝିଅତ, ତୋ ଆଖିକି ସବୁ ଚିଗ ଦିଉଚି ।

ହୀରା : ଚିଗଟାକୁ ଆଉ କ'ଣ ଦଢ କଇବି ?

ହୀରାବୋଉ : (ଗେଷେଇ ଘରୁ ବଡ଼ ପାଟିରେ ଡାକିଲେ ଆଲେ ହେ ହୀର ।
ହୀରା : ଯାଉଚି ବୋଉ ।
ହୀରାବୋଉ : (ସେଇ ଗେଷେଇ ଘରୁ) ଭାତ ପା' ଇଆଡ଼େ ଜାଉ ହେଲା । ଆଣୁଚୁନା ଡ଼ିବିଟା ।
ହୀରା : ନୋଉଚି ବୋଉ, ନୋଉଚି । ଦେ ବାପା ଡ଼ିବିଟା ବୋଉ ପାଟି କଲଣି ।
ଗୋବରା : ରହ ମୁଁ ଛୁଞ୍ଚି ସୂତା ସଜାଡ଼ି ଥୋଇ ଦିଏ ତୁ ଡ଼ିବି ନବୁ ।
ହୀରା : ଛୁଞ୍ଚିରେ କ'ଣ ଏଯାଏ ସୂତା ପୁରେଇ ନହିଁ ଆଉ ସିଲେଇ କରୁଥିଲୁ କେମିତି ?
ଗୋବରା : ଘୁକିଣିଆ ଧଇଲାଣି ଯେ ଦିନରେ ଭଲକି ଦୃଶୁନେଇଁ, ଆଉ ରାତିରେ ଦୃଶିବ କେମିତି ? ଦେଲୁ ମାଆ ସୂତାଟା ଛୁଞ୍ଚରେ ଗଳେଇ ଦେଲୁ ।
ହୀରାବୋଉ : (ସେଇ ଗେଷେଇ ଘରୁ) ଆଲେ ଏ ହୀର । କ'ଣ ଗାଡ଼ିରେ ନା ଘୋଡ଼ାରେ ଅଉଚୁବା ?
ହୀରା : ବାପା ! ପୁଣି ବୋଉ ଡାକିଲଣି, ମୁଁ ଡ଼ିବି ନୋଉଚି । ତୁ ଗେଷେଇ ଘରକୁ ଆଣୁନହିଁ । ବୋଉ ଭାତ ଖାଇବ ମୁଁ ସେଇଠି ତୋ ଗାମୁଛା ସିଲେଇ କରି ଦେବି ।
ଗୋବରା : ହଉ ଘଲ, ଘଲ । (ହୀର ଆଗରେ ଡ଼ିବି ଧରି ଗଲା ତା ପଛରେ ଗୋବର) ଏଡ଼େ ଡଗ ଡଗକି ଘଲି ଯାଉଚୁ କ'ଣ ? ରହ ଅଲୁଅ ଦେଖା ମୁଁ ତୋ ସାଙ୍ଗେରେ ଯିବି । ଟିକେ ଥିଇରି ଘଲ ।
ହୀରା : ଆଉ କେତେ ଥିଇରି ଯିବି ?
ଗୋବରା : ଗଲ ? ଡ଼ିବିଟା ନିଭେଇ ଦେଲୁ ?
ହୀରା : ପବନରେତ ନିଭିଗଲା, ମୁଁ କ'ଣ ଫୁଙ୍କିକି ନିଭେଇ ଦେଲି ?
ଗୋବରା : ଏମିତି ଫର ଫରକି ଘଲିଲେ ଡ଼ିବି ରହିବ ?
ହୀରାବୋଉ : (ପ୍ରବେଶି) ଡିବିଟା ନିଭେଇ ଦେଲୁ ? ତୋ କାମତ ସେଇମିତି । ଏଡ଼େ ଝିଅଟେ ହେଲୁଣୁ କୋଉ କାମରେ ବାଗ ନା ବାଇସ ? କ'ଣ ଦେଖିକି ଏମିତି ଫୁଲୁଚୁ ? ସେମିତି ଯଦି ଷାଠିବାଟିଘର ଝିଅ ହେଇ ଥାଆନ୍ତୁ ... ...

ଗୋବରା : ସବୁ କଥାରେ ଗୁଡେ ବକ୍ ବକ୍ ନ ହେଲେ ତୋ ଭାତ ହଜମ ହୁଏ ନେଇଁ ।

ହୀରାବୋଉ : ତମ ମୁହଁକୁ ନାକ ଥିଲେ ତମେ ଏକଥା କୁହନ୍ତ ? ଦି ଓଳି ଦି ମୁଠା ଖାଇବାକୁ ମିଳୁ ନେଇଁ କଣନା ଭାତ ହଜମ ହଉ ନେଇଁ ।

ଗୋବରା : ତତେ ବେଶୀ ଭୋକ ହଉଚି ? ତୁ ଯେମିତି ଖାଉଚି ଖାଉଚି ହଉଚୁ, ତୋ ଛୁଆ ପିଲବି ସେମିତି ହଉଚନ୍ତି ।

ହୀରାବୋଉ : ଆଉ କ'ଣ ପାଣି ପିଇ ବଢନ୍ତେ ?

ଗୋବରା : ତୁ ଏ ଘରେ ପାଦ ଦେଲୁ ଦିନଠୁ ଅଭାବ ମତେ ଗୋଡ଼େଇଚି । ମୁଁ ଏକ ମୁହାଁ ହେଇ ଧାଇଚି ।

ହୀରାବୋଉ : ହଁ ମୁଁ ଆଇଲା ବେଳକୁ ଏଘରେ ହଣ୍ଡା ହଣ୍ଡା ସୁନା, ରୁପା ଥିଲା । ବାରି ଘର ଧାନ,ଗୁଉଳ ଭର୍ତ୍ତି ହେଇଥିଲା । ଆଉ ମୁଁ ଯେମିତି ତମ ଘରେ ପାଦ ଦେଇଚି ସେ ସବୁ ଉଭେଇ ଗଲା । କ'ଣଯେ ତମକୁ କହନ୍ତି... ... ...

ଗୋବରା : କ'ଣ ଆଉ ବାକି ରଖୁଚୁଯେ କହିବୁ ?

ହୀରାବୋଉ : ମୋ ରାଗ ଚିଡ଼ିଲେ ମୁଁ କାହାର ନୁହଁ ଜାଣିଥା । ମୋ ପାଟିକି ଯାହା ଆସିବ ମୁଁ କହିଯିବି ।

ଗୋବରା : ସତ କହିଲୁ । ତୁ ଆଇଲା ବେଳକୁ ଆମ ଘର ଅବସ୍ଥା କ'ଣ ଏଇଆ ଥିଲା ?

ହୀରାବୋଉ : ସେତେବେଳେ ତମେ ଏକା ଥିଲ । ଯାହା ଆଣିଲ ଠେକି ଚକୁଳିଆ ପଇମା ପରି ଏକା ଖାଇ ଦେଉଥିଲ । ଏବେ ଛୁଆ ପିଲାର ସଂସାର ହେଲା । ସାପ ବଢିଲେ ଚକ୍ର ବଢିବା ପରି ଦିନକୁ ଦିନ ଛୁଆଙ୍କ ପେଟ ବଢୁଚି ।

ଗୋବରା : ମୁଁ କଣ ବଇଚି ?

ହୀରାବୋଉ : ତମେ ବସିଲେ କେତେ ଖଟିଲେ କେତେ ? ଆମେତ ମାସରେ ଆଠ ଦିନ ଖାଡ଼ା ଖାଡ଼ା ଓପାସ । ଛୁଆଗୁଡ଼ା କେଏଁ କାଆଁ ରଡ଼ି ଛାଡୁଚନ୍ତି । ଜାମା ପେଣ୍ଟ ନାହିଁ । ଭିକାରୀ ପିଲା ପରି ଅଭେକା ହେଇ ବୁଲୁଚନ୍ତି । ମୁଁ ସିନା ଚିରା ପିନ୍ଧିବି, ବଢିଲା ଝିଅଟା କ'ଣ ପିନ୍ଧି ପଦାକୁ ବାହାରିବ ?

ହୀରା : ସବୁବେଳେ ସେଇ ପୁରୁଣା ନପଢିଲେ ତୋର ଚଳୁନେଇଁ ? ଘିତ ପା' ଙ୍କାଡ ହେଇ ଯିବ । ଚୁଲିରେ କାଉଁରିଆ କାଠି ଖଣ୍ଡେ ପକେଇ ଡିବିଟାକୁ ନଗେଇ ଦଉନଉଁ ?

ହୀରାବୋଉ : କାଉଁରିଆ କୋଉଠି ଅଛି ?

ହୀରା : ରୋଷେଇଘର କବାଟ କ'ଣରେ କାଉଁରିଆ ତେଗ ହେଇଚି ।

ହୀରାବୋଉ : ହଉ, ତୁ ସେଇଠି ଥା । ମୁଁ ଆଣୁଚି । (ପ୍ରସ୍ଥାନ)

ଗୋବରା : ତୋ ବୋଉର ପାଟିଟା ଆଜି କାଲି ଖରି ରାଜୁଆ ହେଇଗଲଣି ।

ହୀରା : ଅଭାବ ଲୋକର ପାଟି ସେମିତି ରାଜୁଆ ନ ହେଇ ଆଉ କ'ଣ କଅଁଳିଆ ହୁଅନ୍ତା । ସିଏ କେମିତି କେତେ ନାହିଁ ନାହିଁ ଭିତରେ ଘର ଚଳଉଚି ତୁ କ'ଣ ଜାଣିନାଉଁ ?

ହୀରାବୋଉ : (ଜଳନ୍ତା କାଉଁରିଆ ଖଣ୍ଡେ ଧରି ପ୍ରବେଶ) ଦେଖା, ଡିବିଟା ଦେଖା

ହୀରା : ଲଇକି ଲଗା ।

ହୀରାବୋଉ : ଆଉ କେମିତି ନଗେଇବି ? ଏଇଟାରେ ବି ତେଲ ନାହିଁନା କ'ଣ ?

ଗୋବରା : ସବୁ କଥାତ ତୋର ଖାଲି ନାହିଁ ।

ହୀରା : ସତକୁ ସତ ଏ ଡିବିଟାରେ ତେଲ ନାହିଁ ।

ଗୋବରା : ଘରେ କ'ଣ ଆଉ ଜମା ତେଲ ନାହିଁ ।

ହୀରାବୋଉ : ଏତେଥିରେ ମୁଁ ଗଗିବି ନେଇଁ ? କୋଉଦିନ ତମେ ଟିଣରେକି ବୋତଲରେ ତେଲ ଆଣିଚ ? ଗଲ ମଙ୍ଗଳବାର ଦିନ ଡିବି ଦିଇଟା ନେଇ ଦି ଡ଼ିବି ତେଲ ଦୋକାନରୁ ଆଣି ଥିଲ । ଆଉ କେତେ ଦିନ ଯାଆନ୍ତା ?

ଗୋବରା : ତେଲ ସରିଲଣି ବୋଲି ସଞ୍ଜ ଆଗୁରୁ ମତେ କହିଲୁ ନେଇଁ ?

ହୀରାବୋଉ : ତମେତ ରାତି ଗୁଞ୍ଜୁ ଗୁଞ୍ଜୁକି ଘରକୁ ଆସିବ, କହି ଥାଆନ୍ତି କେତେ ବେଳେ ?

ଗୋବର : ଆଉ କ'ଣ ସବୁ ନାହିଁ ?

ହୀରାବୋଉ : କାଲିକି ଗୁଡଡ ନାହିଁ । ସୋରିଷ ତେଲ, ସୋରିଷ ଆଉ ଡ଼ାଲି ଦିଆସିଲି ତ ନାହିଁ । ହଁ ଖାରସୋଡ଼ା ଦଶ ପନ୍ଦର ପଇସାର ଆଣିବ ହୀରା ନୁଗାଟା ଖରି କୋତରା ହେଲଣି ।

ହୀରା : ବାପା !

ଗୋବରା : କ'ଣ ମାଆ ?

ହୀରା : ମୋ ମୁଣ୍ଡଟା ଜଟା ହେଇ ଗଲଣି । ନଡ଼ିଆ ତେଲ ଆଣିବୁ ।

ଗୋବରା : ତେଲ ଶିଶିଟା ଆଣ ମାଆ ।

ହୀରା : ଏଇଟା ନେ ।

ହୀରାବୋଉ : ଝଅଟ ଆସିବ । ଅନ୍ଧାରରେ ଗୋଡ଼ ହାତ ବୁଲେଇ ହଉ ନେଇଁ ।

ଗୋବରା : ଦୋକାନୀ ଝଅଟ ଦେଲେ ତ ଆସିବି ?

ହୀରାବୋଉ : ତରକାରୀ ପାଇଁ କିଛି ପରିବା ନାହିଁ । ଆଳୁ ଦିଇଟା ଆଣିବ ।

ଗୋବରା : ମୁଁ ଦୋକାନକୁ ଯିବାଟା ଯେତେ ଡେରି କରିବି ସଉଦା ତାଲିକା ସେତେ ନମ୍ବିବ ।

ହୀରାବୋଉ : କିଛି ବୋଲି କିଛି ନାହିଁ । ଆଳୁ ଦିଇଟା ନ ହେଲେ, ତତଲ ଭାତ ଗୁଡ଼ା କିଏ କେମିତି ଖାଇବ ଯେ ?

ହୀରା : ବାପା ! ତୁ ଗଲୁ ଡେରି କଲେ ଦୋକାନ ସିଆଡ଼େ ପଡ଼ିଯିବ ।

ଗୋବରା : ହଁ ମାଆ ମୁଁ ଯାଉଚି (ପ୍ରସ୍ଥାନ)

ହୀରା : ବୋଉ ଭାତ ଜାଉ ହେଲା ନା ରହିଲା ?

ହୀରାବୋଉ : ମୁଁ କ'ଣ କରିବି ?

ହୀରା : ବାପା ଆସିବା ଯାଏଁ ତୁ ଅନେଇକି ବଇଥିବୁ, ଭାତ ଗାଳିବୁ ନାହିଁ ?

ହୀରାବୋଉ : ଅନ୍ଧାରରେ କେମିତି କ'ଣ କରିବି ?

ହୀରା : ଚୁଲିରେ କାଉଁରିଆ ଦି ଖଣ୍ଡ ପକେଇ ଦେଲେ ଆଲୁଅ ହବ । ସେଇ ଆଲୁଅରେ ଭାତ ଗାଳିଦେବୁ ।

ହୀରାବୋଉ : ଭଲ କଥାଟିଏ କହିଚୁ । ଗୁହାଳ ଘରୁ ଭଲକି ଦିଖଣ୍ଡ କାଉଁରିଆ ଆଣିଲୁ ।

ହୀରା : ରୋଷେଇ ଘର କଣରେ ପା' ଅଛି ।

ହୀରାବୋଉ : ସେଠିତ ମୋଟେ ଆଉ ଦି' ତିନି ଖଣ୍ଡ ଅଛି, ସେତିକିରେ ହବ ନେଇଁ ।

ହୀରା : ନାଇଁ, ନାଇଁ ତୁ ଭଲକି ଅଣ୍ଡାଳିକି ଦେଖେ, ସେଠି ଦଶ, ପନ୍ଦର ଖଣ୍ଡ କାଉଁରିଆ ଅଛି ।

ହୀରାବୋଉ : ମୁଁ ତ ପାଉ ନେଇଁ । ତୁ ଖୋଜିକି ଦବୁ ।

ହୀରା : ଖୋଜୁନଉଁ । [ଦୁହିଁଙ୍କର ରୋଷେଇ ଘର ଆଡ଼କୁ ପ୍ରସ୍ଥାନ ।]



## ଦ୍ୱିତୀୟ ଆଲୋକ

(ଗୋବରା ଘର । ଗୋବରା ସାନପୁଅ ଚନ୍ଦରା ପିଣ୍ଡା ତଳ ଦୁଆରେ ଗଡ଼ି ଘଡ଼ି କାନ୍ଦୁଛି ।)

ଚନ୍ଦରା : ଏଁ...... ଏଁ ମନ୍ଦରା ମଲା । ଆଜି ମନ୍ଦରାକୁ କୁକୁର ଘୋଷାରିଲା । ଏଁ...... ଏଁ...... ମନ୍ଦାରାକୁ କାଲ ସାନ୍ତୁଗୁଣ୍ଡା ଖାଇଲେ । (କେହି ନ ଶୁଣିବାରୁ କାନ୍ଦ ବନ୍ଦକରି) ବୋଉ ଲେ ! ଏ ବୋଉ ! ବୋଉଲେ ! (ଖୁବ୍ ଗର୍ଜନ କରି) ବୋଉ ! ତୁ କାଲୁଣି ହେଲୁଣି କି ? ବୋଉ ! ଏ ବୋଉ ! ତତେ ବାଘ ଖାଇଲଣି କି ?

ହୀରାବୋଉ : (ପ୍ରବେଶି) ଆରେ ଚନ୍ଦରା ! କିରେ ତଳେ ଗଡ଼ିକି ଏମିତି ତଣ୍ଟି ଫଟେଇ ଚିରାହାଉଚୁ କାହିଁକି ? ତୋ ଜାମା ପେଣ୍ଟ କ'ଣ ହେଇଣି ? ମୁଁ ଆଉ ଏତେ ସଫା କରି ପାରିବି ନେଇଁ ।

ଚନ୍ଦରା : ଏଁ...... ଏଁ..... (ଜୋର୍‌ରେ କାନ୍ଦିଲା)

ହୀରାବୋଉ : କିଏ ତତେ ମାଇଲା ?

ଚନ୍ଦରା : ମନ୍ଦରା ଆଜି ମଲା ।

ହୀରାବୋଉ : ଛି, ଏମିତି କହନ୍ତି ? ସିଏ ପରା ତୋ ଭାଇ ।

ଚନ୍ଦରା : ସିଏ ମୋ ପିଠା କାହିଁକି ନେଇଗଲା ? ମୁଁ ତାକୁ ଭାଇ ଡାକିବି ନେଇଁ ।

ହୀରାବୋଉ : ମୁଁ ପା କଇଥିଲି ତୁ ନୁହେଇକି ଖାଇବୁ ବୋଲି ।

ଚନ୍ଦରା : ମୁଁ କ'ଣ ତାକୁ ଦେଖେଇଛି ? ମୁଁ ଯେମିତି ପିଠାଟା ଧରିକି ଅଇଚି, ସିଏ କୋଉଠି ଥିଲା ମୋ ହାତରୁ ପିଠାଟାକୁ ଟାଣି ନେଇ ପଳେଇଲା ।

ହୀରାବୋଉ : ସିଏ କୁଆଡ଼େ ଗଲା ?

ଚନ୍ଦରା : ସିଏ କୁଆଡ଼େ ପଳେଇଲା ।

ହୀରାବୋଉ : ସିଏ ଅସୁ ମୁଁ ତାକୁ ମାରିବି ।

ଚନ୍ଦରା : ନାଇଁ ତୁ ଧରିବୁ, ମୁଁ ତାକୁ ମାରିବି ।

ହୀରାବୋଉ : ସିଏ ପା ତୋ ବଡ଼ଭାଇ । ବଡ଼ଭାଇକୁ କ'ଣ ମାରନ୍ତି ?

ଚନ୍ଦରା : ମୁଁ ମୋର ଖାଉଥିଲି, ସିଏ କାହିଁକି ମୋ ହାତରୁ ଛଡ଼େଇକି ନେଇଗଲା ?

ହୀରାବୋଉ : ମୁଁ ତାକୁ ମାରିବି । ତୋ ଆଗରେ ମାରିବି ।

ଚନ୍ଦରା : ମୁଁ ଯେତେଟା କହିବି ସେତେଟା ମାରିବୁ ।

ହୀରାବୋଉ : ହଁ ।

ଚନ୍ଦରା : ମୁଁ ଯେତେ ଜୋର୍‌ରେ କହିବି ସେତେ ଜୋର୍‌ରେ ମାରିବୁ ।

ହୀରାବୋଉ : ହଉ ହେଲା ।

ଚନ୍ଦରା : ମତେ କ'ଣ ଦେ ମୁଁ ଖାଇବି ।

ହୀରାବୋଉ : କ'ଣ ଖାଇବୁ ?

ଚନ୍ଦରା : ପିଠା ଦେ ।

ହୀରାବୋଉ : ପିଠା ଆଉ କ'ଣ ଅଛି ?

ଚନ୍ଦରା : ମିଠେଇ ଦେ ।

ହୀରାବୋଉ : ମିଠେଇ କୁଆଡୁ ଆସିବ ?

ଚନ୍ଦରା : ଚୁଡ଼ା ଦେ ।

ହୀରାବୋଉ : ଚୁଡ଼ା କାହିଁ ?

ଚନ୍ଦରା : ମୁଢ଼ି ଦେ ।

ହୀରାବୋଉ : ମୁଢ଼ି କୋଉଠୁ ଆଣିବି ?

ଚନ୍ଦରା : କିଛି ତ ନାହିଁ, ଆଉ କ'ଣ ଖାଇବି ?

ହୀରାବୋଉ : ଚନ୍ଦରା ମୋର ସୁନା ପୁଅ, ସିଏ ତାର ପଖାଳ ଖାଇ ଦବ ।

ଚନ୍ଦରା : ଏତେ ସକାଳୁ ମୁଁ ପଖାଳ ଖାଇବି ନେଇଁ, ନିଦ ମାଡ଼ିବ ।

ହୀରାବୋଉ : ରାତି ଯାକ ଶୋଇ ଶୋଇ ଏଇନେ ଉଠୁଚୁ । ପୁଣି ନିଦ ମାଡ଼ିବ ?

ଚନ୍ଦରା : ହଉ ଦେ । କ'ଣ ନଗେଇ ଖାଇବି ?

ହୀରାବୋଉ : ଆମ୍ବୁଲ ନଗେଇ ଖାଇ ଦବୁ । ଭରି ବଢ଼ିଆ ହବ । (ପୋଟିରେ ଟାକରା ଫୁଟେଇଲେ)

ଚନ୍ଦରା : ନାଇଁ ମୋର ଏବୁଟିବେଳେ ସେଇ ଶୁକୁଟି ଆମ୍ବୁଲ ନଗେଇ ଖାଇବି ନେଇଁ । ମୋ ଦାନ୍ତ ପରଶ ହବ ।

ହୀରାବୋଉ : ଆଉ କ'ଣ ନଗେଇଁ ଖାଇବୁ ?

ଚନ୍ଦରା : ଆଳୁ କି ବାଇଗଣ ପୋଡ଼ି ଦେ ।

ହୀରାବୋଉ : ଆଳୁ ନାହିଁ କି ବାଇଗଣ ନାହିଁ ।
ଚନ୍ଦରା : କାକୁଡ଼ି ଦୋଉନୁ ?
ହୀରାବୋଉ : କାକୁଡ଼ି ନାହିଁ ।
ଚନ୍ଦରା : କିଛି ବୋଲି ତ କିଛି ନାହିଁ, କ'ଣ ନଗେଇ ଖାଇବି ?
ହୀରାବୋଉ : ଗୋଟେ ବଡ଼ି ଅଛି । ସେଇଟା ଝୋଳ କରି ଖାଇ ଦବୁ ।
ଚନ୍ଦରା : ସେ ବଡ଼ିଟା କ'ଣ ଅଛି କି ?
ହୀରାବୋଉ : ଆଉ କ'ଣ ହେଲା ?
ଚନ୍ଦରା : ସେଇଟାକୁ ମୁଁ ଖାଇ ଦେଇଛି ।
ହୀରାବୋଉ : ଖାଲି ପାଟିରେ କାହିଁକି ଖାଉଥିଲୁ ? ଯେତେ ଯାହା ଖାଇଲେ ତ ତମକୁ ଅଣ୍ଟିଲା ନାହିଁ । ଏଥର ଗୁଳ ଓଳରି ନଡ଼ା ଖାଆ ।
[ଏତିକି ବେଳେ ଆସିଛନ୍ତି ଗୋବରା । ଗୋବର ଗୋଟାଉ ଥିଲା, ହାତରେ ଗୋବର ଲାଗିଛି ]
ଗୋବରା : କାହାକୁ ଗୁଳ ଓଳରିକି ଖାଇବାକୁ ଦୋଉଚୁ ?
ଚନ୍ଦରା : ବାପା ! ବୋଉ ମତେ କୋଉଚି ନଡ଼ା ଖାଆ । ମୁଁ କ'ଣ ଗାଇ ହେଇଚି ନଡ଼ା ଖାଇବି ?
ଗୋବରା : ଛୁଆଟାକୁ ଏମିତି କହନ୍ତି ?
ହୀରାବୋଉ : ତମେ ତମ ଛୁଆକୁ ସମାଳ, ମୁଁ ଆଉ ପାରିବି ନେଇଁ ।
ଗୋବରା : କ'ଣ ହେଇଚି ?
ହୀରାବୋଉ : ଛୁଆ ଖଣ୍ଡେ, ସିଏ ପୁଣି ଦୁନିଆ ଯାକର ପୁରାଣ ବାହାର କରୁଚି ।
ଚନ୍ଦରା : ବାପା କଇବି, ମୁଁ ସକାଳୁ କିଛି ଖାଇ ନେଇଁ । ଦେଖେ ବାପା, ମୋ ପେଟ କେମିତି ଭିତରକୁ ପଶି ଯାଇଚି । (ପେଟ ଦେଖେଇଲା)
ଗୋବରା : ତତେ ବୋଉ କିଛି ଦେଇ ନେଇଁ ?
ଚନ୍ଦରା : ବୋଉ ମୋତେ ଗୋଟେ ପିଠା ଦେଇଥିଲା । ମୋ ଠୋଉଁ ଭାଇ ଛଡ଼େଇକି ଖାଇଦେଲା । ମୁଁ ଖାଇବାକୁ ମାଗିଲାଠୁଁ ବୋଉ ମତେ କୋଉଚି ନଡ଼ା ଖାଆ ।
ଗୋବରା : ଛୁଆଟାକୁ ଏମିତି କଥା କହିବା ଠିକ୍ ନୁହଁ ।
ହୀରାବୋଉ : ଏଇଟା ଖାଇବି ନେଇଁ, ସେଇଟା ଖାଇବି ନେଇଁ । ପଖାଳ ଖାଇଲେ ନିଦ ମାଡ଼ିବ, ଗଟା ଖାଇଲେ ଦାନ୍ତ ପରାଣ ହବ । ମୁଁ

ଆଉ କୋଉଠୁ କ'ଣ ଆଣିକି ଦେବି ?

ଗୋବରା : ତା' ବୋଲି କଇବୁ ନଡ଼ା ଖାଆ ?

ହୀରାବୋଉ : ସିଏ ମତେ ଚିଡ଼େଇଲ ରାଗରେ କଇଦେଲି ।

ଚନ୍ଦରା : କ'ଣ ତତେ ଚିଡ଼େଇଲି ? ମୁଁ ତ ଖାଇବାକୁ ମାଗିଲି ।

ହୀରାବୋଉ : ପଖାଳ ଅଛି ବାଢ଼ି ଆଣିବୁ ଖାଇଦବୁ । ଏତେ ଫେଚେକାମି କାଇଁକି ବାହାର କରୁଚୁ ?

ଗୋବରା : ରହ, ଛୁଆଟା ସାଙ୍ଗେରେ ଆଉ ଲଗାନା । ଦେଲୁ, ମୋ ହାତକୁ ପାଣି ମନ୍ଦେ ଟେକି ଦେଲୁ, ଗୋବର ହାତଟା ଧୋଇ ହେଇପଡ଼େ, ମୋ ଅଣ୍ଟାରେ ସୁଲକିଟାଏ ଥିଲ ତାକୁ ଦିଏ, ସିଏ ମୁଢ଼ି କିଣିକି ଖାଇବ ।

ହୀରାବୋଉ : ତମେ ଠିଆ ହୁଅ, ମୁଁ ପାଣି ଆଣୁଚି । (ପ୍ରସ୍ଥାନ)

ଚନ୍ଦରା : ବାପା, ପଇସା କୋଉଠି ଅଛି କୋଉ ନୋଉଁ ମୁଁ ଫଟେଇକି ନେଇଯିବି । (ଚନ୍ଦର ଗୋବରାର ଅଣ୍ଟାରେ ହାତ ମାରିଲ)

ଗୋବରା : ରହ, ତୁ ଏମିତି ବେସ୍ତ ହୋଉଚୁ କାଇଁକି ? ଆରେ ରହ ଅଣ୍ଟାରେ ହାତ ମାରନା । ତୁ ଚୁପ୍ ହେଇ ଠିଆ ହୋ, ମୁଁ ହାତ ଧୋଇଲେ ଦେବି ।

ହୀରାବୋଉ : (ପ୍ରବେଶି) ବାହାରକୁ ହାତ ଦେଖା । (ହାତରେ ପାଣି ଢାଳିଲ) ହଁ, ଆଉ ଟିକେ ତଳକୁ ଦେଖା, ମୋ ଉପରକୁ ପାଣି ଛିଟୁକୁଚି ।

ଗୋବରା : ରହ, ଏକା ବେଳକେ ସବୁ ପାଣି ଢାଳି ଦଉଚୁ କାଇଁକି ? ଆସ୍ତେ ଢାଳ । ହଁ... ହଁ... ସେତିକି, ସେତିକି । ଆଉ ଦରକାର ନାହିଁ ।

ଚନ୍ଦରା : ବାପା ପଇସା ଦେ ।

ଗୋବରା : ରହ, ହାତଟା ପୋଛି ହେଇ ସାରେ ।

ଚନ୍ଦରା : ଝଅଟ ଦେ ।

ଗୋବରା : (ହାତ ପୋଛି ହୋଇ ଅଣ୍ଟାରୁ ଗାମୁଛା କାଢ଼ି କାନ୍ଧରେ ପକାଇଲେ ଅଣ୍ଟାରୁ ପଇସା କାଢ଼ି) ନେ... ।

ଚନ୍ଦରା : କମାରୁ ପଚିଶ ପଇସା ? ପଚିଶ ପଇସାରେ କମା ଦଶ କୋଡ଼ିଏଟା ମୁଢ଼ି ହବ ।

ଗୋବରା : ଆଉ ପଇସା ନାହିଁ ।
ଚନ୍ଦରା : ହେଲ ତୋ ଅଣ୍ଟାରେ ଆଉରି ବେଶି ପଇସା ଅଛି । (ଗୋବରାର ଅଣ୍ଟାରେ ଥିବା ପଇସାରେ ଚନ୍ଦରା ହାତ ମାରି ଦେଲ )
ଗୋବରା : ରହ ମୋ ଅଣ୍ଟାରେ ହାତ ମାରନା ।
ହୀରାବୋଉ : ତାକୁ ଆଉ ଦଶଟା ପଇସା ଦିଅ, ସିଏ ଯାଉ ।
ଗୋବରା : (ଅଣ୍ଟାରୁ ବାହାର କରି) ହଉ ନେ, ଯା ।
ଚନ୍ଦରା : ପଚିଶ, ଦଶ କେତେ ହେଲ ବୋଉ ?
ହୀରାବୋଉ : ତୁ ଯାଉଚୁନା ?
ଗୋବରା : ଯା ମୁଢ଼ି ଖାଇ ଦେଇ ସ୍କୁଲକୁ ପଳେଇବୁ ।
ଚନ୍ଦରା : ଏଇ ଚିରା ପେଣ୍ଟ ପିନ୍ଧି ମୁଁ ଇସ୍କୁଲୁକୁ ଯିବି ନେଇଁ ।
ହୀରାବୋଉ : ଆଉ କ'ଣ ତୋ ପେଇଁ ଏଇନେ ଗୋଟେ ନୂଆ ପେଣ୍ଟ୍ ଆସିବ ?
ଗୋବରା : ତୁ ଆଜି ଯା । ମୁଁ କାଲି ସିଲେଇ କରି ଆଣିବି ।
ଚନ୍ଦରା : ମୋର ଜମା ଗୋଟେ ପେଣ୍ଟ ସେଇଟା ପୁଣି ଚିରା । ମୋ ପେଇଁ ଗୋଟେ ନୂଆ ପେଣ୍ଟ ......
ଗୋବରା : ହଉ, ତୁ ସ୍କୁଲକୁ ଯା, ଆର ହାଟ ପାଳିକି ଆଣିବି ।
ଚନ୍ଦରା : ଏମିତି କେତେ ହାଟ ପାଳି ଗଲଣି ।
ଗୋବରା : ନାଇଁ ଆର ହାଟ ପାଳିକୁ ନିଶ୍ଚେ ଆଣିବି । ତୁ ସ୍କୁଲକୁ ଯା ।
ଚନ୍ଦରା : ନିଶ୍ଚେ ଆଣିବୁ । ନ ଆଣିଲେ ମୁଁ ଆଉ ଇସ୍କୁଲକୁ ଯିବି ନେଇଁ କହି ଦଉଚି । (ପ୍ରସ୍ଥାନ)
ଗୋବରା : ହଉ ।
ହୀରାବୋଉ : ତମେ ସବୁବେଳେ ଘରେ ରହନ୍ତ କି ଦେଖନ୍ତ । ପୋଉଠୁ ଯାହା ଦେଖୁ ଆଉଚନ୍ତି ସେ ଜିନିଷ ପେଇଁ ମତେ ଝୁଣି ପକଉଚନ୍ତି । ତମେ ଥିଲ ବୋଲିନା, ନହେଲେ କ'ଣ ଏତେ ସହଜରେ ସିଏ ଯାଇ ଥାଆନ୍ତା ?
ଗୋବରା : ହୀରା କୁଆଡ଼େ ଗଲ ?
ହୀରାବୋଉ : ପାରା ଘରକୁ ଯାଇଚି ।
ଗୋବରା : କାଇଁକି ?
ହୀରାବୋଉ : ତମକୁ କେତେ ଥର କଇଲିଣି ମୋର ଯାହା ହଉ ପଛେ ତା'

ପେଣ୍ଟି ଖଣ୍ଡେ ଶାଢ଼ି ଆଣ । ଖଣ୍ଡେ ଶାଢ଼ି ଧୋଇ ଶୁଖେଇ ଆଉ ମାସ ହେଲା ସିଏ ପିନ୍ଧୁଚି । ଆଜି ବସି ପଡ଼ିଲା ବେଳକୁ ଏଡ଼େ ଖଣ୍ଡେ ଫାଟି ଗଲା ।

ଗୋବରା : ସିଏତ ସବୁ କାମରେ ଖାଲି ଫର ଫର ହଉଚି, ଚିରିବ ନେଇଁ ?

ହୀରାବୋଉ : କପାସିଆ, ଛମାସିଆ । ଖଣ୍ଡେ ଶାଢ଼ି ଏତେ ଦିନ ପିନ୍ଧିଲା ଆଉ କେତେ ଦିନ ପିନ୍ଧନ୍ତା ?

ଗୋବରା : ସିଏ ପାଗ ଘରକୁ କାହିଁକି ଯାଇଚି ?

ହୀରାବୋଉ : କ'ଣ ଅଛି ଏ ଘରେ ? ସୂତା ଖଣ୍ଡେ ପେନ୍ଥି ଯା' ଘରୁ ତା' ଘରୁ ହବାକୁ ପଡୁଚି ।

ଗୋବରା : ହଉ ସିଏ ଯୁଆଡ଼େ ଯାଇଚି ଯାଉ । ଆଣିଲୁ କ'ଣ ଅଛି ଖାଇବାକୁ ।

ହୀରାବୋଉ : ପଖାଳ ଦିଇଟା ଅଛି । ମୁଁ ତ ଏଯାଏ ଖାଧେଇ ନେଇଁ । ହୀରାକୁ ଡାକେ ସିଏ ବାଢ଼ି ଦବ । (ବଡ଼ ପାଟିରେ ଡାକିଲା) ହୀରାଲୋ... ଏ ହୀରା... ... ଆଲୋ ଏ ହୀରା... ... (ଡାକି ଡାକି ଚାଲିଗଲେ । ତାଙ୍କ ପଛେ ପଛେ ମଞ୍ଚ ଅନ୍ଧକାର ହୋଇଗଲା)



# ତୃତୀୟ ଆଲୋକ

( ଗୋବରର ସେଇ ଘର । ସମୟ ସନ୍ଧ୍ୟା )

ଅନାଦି (ବାହାରେ ଠିଆ ହୋଇ) ଗୋବର ! ଗୋବର ! ଗୋବର ଘରେ ଅଛୁକି ?

ଗୋବର (ବାହାରକୁ ଆସି) କିଏ ଅନାଦି ଭାଇ ? ଆସ ଏଇ ପିଣ୍ଡା ଉପରକୁ ଆସ ।

ଅନାଦି ନାଇଁ ତୁ ଏଇଠିକି ଆ । ଠିଆ ଠିଆ ପଦେ କଥା ହେଇ ମୁଁ ପଳେଇବି । (କହି କହି ଘର ଭିତରକୁ ଆସିଲେ)

ଗୋବର ବସନ୍ତୁ, ଘରେ ଏମିତି କି କାମ ଅଛିକି ?

ଅନାଦି ଗାଈ ନୋଉଛଟା ବେଳଟା, ଗାଈ ଗୋରୁ ସାଇଟିବ କିଏ ?

ଗୋବର କାହିଁକି ? ତମ ପୁଅସବୁ କୁଆଡେ ଗଲେକି ?

ଅନାଦି ତାଙ୍କ କଥା କହନା

ଗୋବର କାହିଁକି ?

ଅନାଦି ବଡ଼ଟାକୁ ଏତେ ପାଠ ପଢେଇଲି ଶେଷରେ ସେଟା ଇଫଙ୍ଗା ହେଇଗଲା ।

ଗୋବର ପରେଶଚ ଭଲ ପଢୁଥିଲା ?

ଅନାଦି ବେ ପାଶ୍ କରି ବୁଲୁଚି । କେତେ ନାଇଁ କେତେ ଇଣ୍ଟରଭ୍ୟୁ ଦେଲାଣି ଗ୍ଗକିରି ନା ଫାକିରି ।

ଗୋବର ଆଉ ନରେଶ ?

ଅନାଦି ସେଇଟା କ'ଣ ଯାତ୍ରା ଦଳରେ ମିଶିଚି ଯେ ଦିନରାତି ସେଇ ଆଖେଡା ଘରେ । (ପିଣ୍ଡା ଉପରେ ବସିଲେ ।)

ଗୋବର ଆଲୋ ଏ ମାଆ ହୀରା ! ସପ ଖଣ୍ଡେ ପିଣ୍ଡାରେ ପକେଇଲୁ ।

ହୀରା (ଘର ଭିତରୁ) ନୋଉଚି ବାପା ।

ଅନାଦି ଥାଉ, ଖାଲି ପିଣ୍ଡାରେ ବସିଲେ କ'ଣ ହବ ନେଇଁ ?

ହୀରା (ସପ ଧରି ପ୍ରବେଶ) ନେ ବାପା ।

| | | |
|---|---|---|
| ଗୋବରା | : | ଟିକେ ଭଠ ଅନାଦି ଭଇ । ସପ ଟା ଟିକେ ବିଛେଇ ଦଇ । |
| ଅନାଦି | : | ଥାଉ, ମାଆ । ଆମେ ବିଛେଇ ଦବୁ । |
| ଗୋବରା | | ସିଏ ବିଛେଇ ଦଇ । (ହୀରା ସପ ବିଛାଇ ଦେଲା) |
| ଅନାଦି | | ହେଇ, ହେଇ । ତୁ ଯାଆ ମା । (ହୀରାର ପ୍ରସ୍ଥାନ) |
| ଗୋବରା | | କୁଆଡ଼େ କେମିତି ଗଡ଼ି ପଡ଼ିଲ ଅନାଦିଭଇ । |
| ଅନାଦି | : | ନାଇଁ, ଏଇ ଧନୁବାବୁ କହୁଥିଲେ, ଗୋବରା ହାତ କାମ ଭରି ଭଲ । ତୁ ତାଙ୍କର ନୂଆ ଘରର ଯୋଉ କବାଟ, ଚଉକାଠ, ଝରକା ତିଆରି କରିଥିଲୁ ସେ ସବୁ ଭରି ସୁନ୍ଦର ହେଇଚି । |
| ଗୋବରା | | ହଁ, କାଠ ଭଲ ହେଲେ ଜିନିଷ ଭଲ ହବ । |
| ଅନାଦି | : | କାଠ ଭଲ ହେଲେ କ'ଣ ଭଲ ହେଇଯିବ ? ସେଇ ଏକା କାଠତ ନାଗେଟି ତାଙ୍କ ଦାଣ୍ଡଘରେ, ତୋ କାମ ସାଙ୍ଗରେ ସିଏ କ'ଣ ନାଗିବ ? |
| ଗୋବରା | | ମୁଁ କୋଉ ବଡ଼େଇ ହେଇଚି ? ଅନୁମାନ କରିକି କରୁ କରୁ ଯାହା ଯେମିତି ହେଇଚି । |
| ଅନାଦି | : | କୋଉ ବଢେଇ ତୋ କାମ ସାଙ୍ଗରେ କାମ ନଗେଇ ଦବ ? |
| ଗୋବରା | | ଧନୁ ବାବୁଘର ଆଉ କ'ଣ କାଠ ଜିନିଷ ହବକି ? |
| ଅନାଦି | | ନାଇଁଯେ... କାଲି ପୋଖରୀ ତୁଠରେ ସିଏ ତୋ କଥା କହୁଥିଲେ । |
| ଗୋବରା | | ଆଉ କ'ଣ ସବୁ କହୁଥିଲେ ? |
| ଅନାଦି | : | ତୋ ପେଇଁ ମନଦୁଃଖ କରୁଥିଲେ । |
| ଗୋବରା | : | ମୋ ପେଇଁ ? |
| ଅନାଦି | | ହଁ । କହୁଥିଲେ – ଗୋବରର ଜାତି ଗଲା ପେଟ ପୂରିଲା ନାହିଁ । |
| ଗୋବରା | : | ମୁ କିଛି ବୁଝିପାରୁ ନେଇଁ ଅନାଦି ଭଇ । କ'ଣ ଜାତିଗଲା ? |
| ଅନାଦି | | ଏମିତି ଅନେକ କଥା ନିଜ ଆଖିକୁ ଦେଖାଯାଏ ନେଇଁ କି ଅନ୍ୟ କେହି ବୁଝେଇ ନଦେଲେ ଯାଏ ବୁଝିହୁଏ ନାହିଁ । ଗାଆଁ ଦାଣ୍ଡକୁ ଅନେଇଲୁ, କେତେ ହଳ ଗ୍ଳଲିଚି । ତୋର ଯଦି ଜମିବାଡ଼ି ଥାଆନ୍ତା ନିଜ ବେଉସା ଛାଡି ତୁ ଆଜି ପରଘରେ ନିହାଣ ମୁଗୁର ଧରି ଠୁକୁ ଠୁକୁ କରୁ ଥାଆନ୍ତୁ ? |
| ଗୋବରା | | [ଦୀର୍ଘ ନିଃଶ୍ୱାସ ପକେଇ] ମୋ ଭଗ୍ୟ । |

ଅନାଦି : ବଢ଼େଇ କାମଟା ସେମିତି କିଛି ଖରାପ କାମ ନୁହଁ ଯେ ହେଲେ..... ସେଥିରେ ଯଦି କୁଟୁମ୍ବ ପୋଷି ହଉ ଥାଆନ୍ତା ତାହେଲେ ଖଡିବାର କିଛି ନଥିଲା ।

ଗୋବରା : ସବୁଦିନେ କାମ ମିଳିଲେ ଯାହା ଯେମିତି ହୁଅନ୍ତା । ଆଉ ଏ କାମ କରି ଯାହା ଯେମିତି ମିଳୁଚି ଚଳି ଯାଆନ୍ତା ।

ଗୋବରା : ସେତକ ଥିଲେ ମୁଁ ଏକାମ କାହିଁ କି କରନ୍ତି ?

ଅନାଦି : ଭୋକ ଉପାସରେ ଏମିତି ଆଉ କେତେ ଦିନ ଖଟିବୁ ?

ଗୋବରା : ଧାର, ଉଧାର, କରଜ ଦାମ କିଛି କମ୍ ନୁହେଁ ।

ଅନାଦି : ତୁ ଖାଆ ନଖାଆ କିଏ ଦେଖୁଚି ନା ଜାଣୁଚି ? ହେଲେ ଏ ବଡିଲା ଝିଅଟାକୁ ଆଉ କେତେ ଦିନ ଘରେ ରଖିବୁ ?

ଗୋବରା : ସେଇ କଥା ଭାବି ଭାବି ମୋ ଆଖିକି ନିଦ ନାହିଁକି ପେଟକୁ ଭୋକ ନାହିଁ ।

ଅନାଦି : ଦିନକୁ ଦିନ ଅଭାବ ବଢ଼ିବ ପଛେ କମିବ ନେଇଁ । ଯେତେ ଶୀଘ୍ର ପାରୁ ଯାହା ଯେମିତି ହଉଚି ତାକୁ ଉଠେଇ ଦେ ।

ଗୋବରା : କ'ଣ ଅଛି ? କେମିତି ବାହାଘର କରିବି ? ହାଣବୋଉର ଯାହା ଜିନିଷ ଥିଲା ସେ ସବୁ ଗଲା ବାତ୍ୟା ବରଷ ବିକି ହେଇ ଯାଇଚି । ଜମିବାଡ଼ିତ ବାଡ଼ି ଗୋବରରେ ଗୋବେ ନାହିଁ । ଥିଲେ ଅବା କୋଉଠି ବନ୍ଧାଛନ୍ଦା ପକେଇ କ'ଣ କରି ଥାଆନ୍ତି ।

ଅନାଦି : ହୀରା ପରି ସୁନ୍ଦର ଝିଅ ପେଇଁ ଯୌତୁକ କ'ଣ ଦରକାର ?

ଗୋବରା : ଯୋଉତୁକ ବିନା ଦରକାର ନାହିଁ, ବାହାଘର ପେଇଁ ଟଙ୍କା ପଇସା ଦରକାର ନାହିଁ ?

ଅନାଦି : ତୁ ସେ ସବୁ ପେଇଁ ଭବନା କରନା । ସେ ସବୁ ଆପେ ଆପେ ଠିକ୍ ହେଇ ଯିବ ।

ଗୋବରା : ଆପେ ଆପେ ହେଇଯିବ ?

ଅନାଦି : ତୁ କ'ଣ ପାଇବୁ ? ମୁଁ କଥା ଦଉଚି ଯେତେବେଳେ ମୁଁ ସେ କଥା ବୁଝିବି । ଓଲଗିଲ ଘର କ'ଣ କେବେ ଅଛାଉଣି ରହିଚି ? ତୁ ଖାଲି ହଁ ମାରିଲେ ହେଲା ।

ଗୋବରା : କୋଉଠି ଠିକ୍ କରିଚ କହିଲ ?

ଅନାଦି : କୋଉଠି କ'ଣମ, ଆମ ଗାଁଆରେ ।

ଗୋବରା : ଆମ ଗାଁଆରେ ?

ଅନାଦି : ହଁ, ଆମ ଗାଆଁରେ ।

ଗୋବରା : ଆମ ଗାଆଁରେ କାହାଘର ?

ଅନାଦି : ଆମ ଗାଆଁର ସବୁଠୁ ନାମଦାଦା ଘର ।

ଗୋବରା : ସବୁଠୁ ନାମଦାଦା ଘର ?

ଅନାଦି : ହଁ ।

ଗୋବରା : କାହାଘର ?

ଅନାଦି : ଧନୀ ବାବୁଙ୍କ ଘର ।

ଗୋବରା : ତମ ମୁଣ୍ଡ କ'ଣ ଖରାପ ହେଲାଣି ? ତାଙ୍କରତ ପୁଅପାଟି ନାହାଁନ୍ତି ଆଉ କାହା କଥା କହୁଚ ?

ଅନାଦି : ତାଙ୍କର ପୁଅ ପାଟି ନଥିଲେ କ'ଣ ହେଲା ? ଅତକାଟଙ୍କ ସମ୍ପତ୍ତି ଅଛି ?

ଗୋବରା : ସେଥିରୁ ଆମକୁ କ'ଣ ମିଳିବ ? ସିଏ କ'ଣ କାହାକୁ ପୋଷ୍ୟପୁତ୍ର କରି ଆଣିଲେକି ?

ଅନାଦି : ତାଙ୍କୁ ଏମିତି ବୟସ କେତେ ହେଲାକି ? ହେଉ ହେଉ ପଚିଶ୍ଲିଶ ହବ । ସିଏ ଗ୍ରହିଲେ ତାଙ୍କର କ'ଣ ପୁଅ ହବ ନେଇଁ ଯେ ପୋଷ୍ୟ ପୁତ୍ର କରିବେ ?

ଗୋବରା : ତମେ କ'ଣଯେ କୁହ ଅନାଦି ଭାଇ ? ତାଙ୍କର ପୁଅ ହବ କୋଉ-ଦିନ, ସିଏ ବାହାହବ କୋଉଦିନ ?

ଅନାଦି : ମୁଁ ଯାହା କୁହେ ଠିକ୍ କୁହେ । ତୁ ବୁଝିବା ଭୁଲ ।

ଗୋବରା : ମୁଁ ତ କିଛି ବୁଝିପାରୁ ନେଇଁ ।

ଅନାଦି : ଏଥିରେ ନ ବୁଝିବାରେ କ'ଣ ରହିଲା ? ଧନୀବାବୁଙ୍କର ପିଲାପିଲି ହଉ ନାହାଁନ୍ତି । ସିଏ ଆଉ ଥରେ ବାହା ହେବେ ।

ଗୋବରା : କ'ଣ କହିଲ ? ମୋର ପିଲା ଝିଅଟାକୁ ମୁଁ ପଚାଶ ବର୍ଷର ବୁଢା ହାତରେ ଟେକି ଦେବି ?

ଅନାଦି : ତୋ ଝିଅ ସୁଖରେ ରହିବ ।

ଗୋବରା : ତମର ପା' ଗୋଟେ ଝିଅ ଅଛି । ତମେ କ'ଣ ନିଜ ଝିଅଟାକୁ ଏମିତି ଗୋଟେ ବୁଢା ବେକରେ ଗଳେଇ ଦେଇ ପାରିବ ?

ଅନାଦି : ଆରେ ତୁ ଏମିତି ରାଗୁଚୁ କାଇଁକି ? କଥାଟା ଟିକେ ମନରେ ଗଣ୍ଠା । ଖାଲି ତୋ ଝିଅ ସୁଖରେ ରହିବ ନେଇଁ, ତୋରବି ଅଭାବ ଅସୁବିଧା କିଛି ରହିବ ନେଇଁ ।

ଗୋବରା : ଖବର ଦାର ଏମିତି କଥା ଆଉ ଦିନେ ଯେମିତି ନ କୁହ । ଧନୀ ବିଶ୍ୱାଳ ଝପଟି ଖାଇବାକୁ ତମ ଜିଭ ଯଦି ହଳହଳ ହଉଚି ତମ ନିଜ ଝିଅକୁ ଦେଇପକା ।

ଅନାଦି : ବେଳ ଆସିଲେ ମୋ କଥା ଦେଖିବୁ । ହେଲେ ସେତେବେଳକୁ ନେଡ଼ିଗୁଡ କହୁଣିକି ବୋହି ଯାଇଥିବ ।

ଗୋବରା : ଗରିବ ହେଲୁ ବୋଲି ଆମର କ'ଣ ବୁଦ୍ଧି, ଅକଲ ପସନ୍ଦ କିଛି ନାହିଁ ?

ଅନାଦି : ବୁଦ୍ଧି ଅକଲ, ପସନ୍ଦକୁ ଧରିକି ବଇଥା, ଝିଅକୁ ବୁଢ଼ୀ କରୁଥା ।

ଗୋବରା : ତମ ମୁରବି ପଣିଆ ସେତିକି ଥାଉ ।

ଅନାଦି : ମୁଁ ଯାଉଚି ଗୋବର । କଥାଟାକୁ ମନରେ ନୋଉଟେଇ ପୋଉଟେଇ ଦେଖିବୁ ।

ଗୋବରା : ଯିବା ଆଗରୁ ତମେ ମୋ କଥାଟାବି ଶୁଣିଯାଇଥା । ତମେ ଘରେ ଭଇକି ଦେଖିବ ତମ ଝିଅ ରେବତୀକୁ ଧନୀବାବୁଙ୍କୁ ବାହାକରି ଦେଲେ ତମର ସେଥିରେ ଫାଇଦା ହବକି ନାହିଁ ।

ଅନାଦି : ରହରେ ପୁଅ, ମୁଁ ଦେଖିବି ତୁ କୋଉ ରଜାପୁଅ ସାଙ୍ଗରେ ଝିଅକୁ ବାହା କରିବୁ । (ପ୍ରସ୍ଥାନ)

ହୀରାବୋଉ : (ପ୍ରବେଶି) ସମିତିକିତ ନିଜର ବୋଲି କୁଣ୍ଢେଇ ଥାଅ, ଏବେ ଲୋକ ଚିହ୍ନ ।

ଗୋବରା : କାହାକୁ ଆଜି କାଲି ବିଶ୍ୱାସ ନାହିଁ । ସୁତୁରେଇ ସୁତୁରେଇ ଅଣ୍ଟିରେ ପଶିବେ, ତଣ୍ଟି କାଟି ଦେଇ କୋଉ ମାରଗରେ ପଳେଇବେ ।

ହୀରାବୋଉ : ତମ ଭଳିଆ ଓଲ ଲୋକକୁ ଯିଏ ନାଇଁ ସିଏ ଠକିବ ।

ଗୋବରା : ମୁଁ ଓଲ, ତୁ ଭାରି ଗ୍ୟାଞ୍ଜଶଟା ?

ହୀରାବୋଉ : ତମେ ଓଝ ନ ହେଇ ଥିଲେ ସିଏ ଏମିତି କଉ ଥାଆନ୍ତେ ନା ତମେ ଶୁଣି ଥାଆନ୍ତ ?

ଗୋବରା : ଆଉ ତୁ ହେଇଥିଲେ କ'ଣ କରି ଥାଆନ୍ତୁ ?

ହୀରାବୋଉ : ମୁଁ ହେଇଥିଲେ ତାଙ୍କ ମୁହଁ ଭଙ୍ଗିଦେଇ ଥାଆନ୍ତି । ସିଏ ଆମକୁ କ'ଣ ବୋଲି ପାଇଛେଣି କି ?

ଗୋବରା : ମୁଁ ବି କିଛି କମ କଥା କହି ନେଇଁ ? ମଣିଷ ହେଇଥିଲେ ବୁଝିବ ।

ହୀରାବୋଉ : ତାଙ୍କ ଚମ ଭଳି ବଧିର । ତାଙ୍କୁ ଆହୁରି କଡା ଓଷଦ ଦରକାର ।

ଗୋବରା : ହଉ, ପାଣି ଗିଲାସେ ଆଣିଲୁ, ଶୋଷରେ ମୋ ପାଟିଟା କେମିତି ଅଠା ଅଠା ଲାଗିଲାଣି ।

ହୀରାବୋଉ : ହୀଗ ! ଏ ହୀଗ ! ବାପା ପେଇଁ ପାଣି ଗିଲାସେ ଆଣିଲୁ ମାଆ ।

ଗୋବରା : ସବୁ କଥାରେ ହୀଗକୁ କ'ଣ ଡାକୁଚୁ ?

ହୀରାବୋଉ : ହଉ, ତମେ ଟିକେ ଠିଆହୁଅ, ମୁଁ ଆଣୁଚି (ଘର ଭିତରକୁ ଗଲା)

ଗୋବରା : ମୋ ଗାମୁଛାଟା ଆଣିଥିବୁ । ମୁଁ ଟିକେ ସାଇ ଆଡ଼େ ଯିବି ।

ହୀରାବୋଉ : (ପାଣି ଆଣି ଆସିଲା) ନିଅ, ପାଣି ନିଅ ।

ଗୋବରା : (ପାଣି ପିଇଲା) ଗାମୁଛାଟା ଦେ ।

ହୀରାବୋଉ : ନିଅ । ଏତେ ରାତିରେ ସାଇ ଆଡେ କାହା ପାଖକୁ ଯିବ ?

ଗୋବରା : ନରିଆର ଗୋଟେ ଅଖ ଭିଡ଼ିଥିଲି, ସିଏ ଆଜି ଟଙ୍କା ଦବ ବୋଲି କହିଥିଲା ।

ହୀରାବୋଉ : ଆଇଲାବେଳେ ଫକୀର ଦୋକାନରୁ ଲୁଣ ପଖଣ ପଇସାର ଆଣିବ ।

ଗୋବରା : ହଉ ।



## ଚତୁର୍ଥ ଆଲୋକ

[ଗୋବରାର ଘର । ସମୟ ଖରବେଳ । କାହାକୁ ପ୍ରବେଶ କଲ ପରେଶ । ଘରେ କେହି ନାହାଁନ୍ତି । ଘର ଦୁଆର ମୁହଁ ପର୍ଯ୍ୟନ୍ତ ପରେଶ ଗଲ । କବାଟରେ ତାଲ ପଡ଼ିଥିବାର ଦେଖି ପରେଶ ଫେରି ଯାଉଥିଲ । ଏଇ ସମୟରେ ବାହାରୁ ଆସିଛି ହୀରା । ହାତରେ ଧରିଛି ବିଶଲ୍ୟ କରଣୀ ଗଛର ଡାଳ । ହୀରା ତରବର ହୋଇ ଆସୁଛି ଏବଂ ପରେଶ ଅନ୍ୟ ମନସ୍କ ହୋଇ ଫେରୁଛି । ଦୁହିଁଙ୍କ ଭିତରେ ଧକ୍କା ଲଗିଯାଇ ଥାଆନ୍ତା । ଅଳ୍ପକେ ଦୁହେଁ ଦୁହିଁଙ୍କୁ ସମ୍ଭାଳି ନେଲେ ।]

ପରେଶ : (ଥତମତ ହୋଇ) ଏଇ ମୁଁ ... ... ମୁଁ ... ...

ହୀରା : ତୁମେ କେତେବେଳୁ...... ମାନେ......

ପରେଶ : ନାଇଁ, ମୁଁ ଏଇନେ ଆସିଥିଲି । ଦେଖିଲି ଘରେ ତାଲ ପଡ଼ିଚି । ମୁଁ ସେଥିପାଇଁ ଫେରି ଯାଉଥିଲି ।

ହୀରା : ଘରେ ତାଲ ପଡ଼ିଚି ? କାହିଁକି ଘରେ କ'ଣ ମୋ ବୋଉ କି ଚନ୍ଦରା ମନ୍ଦରା କେହି ନାହାଁନ୍ତି ?

ପରେଶ : ନାଁ, କେହି ନାହାଁନ୍ତି । ତୁ ହାତରେ ସେଟା କି ଡାଳ ଧରିଚୁ ?

ହୀରା : ଆମ ଚନ୍ଦ୍ରସ୍ ଗୋଡଟା ଛେଚି ହୋଇ ଯାଇଚି ଯେ...

ପରେଶ : କେମିତି ଛେଚି ହେଲ ?

ହୀରା : ସେଟା ଭାରି ଦୁଷ୍ଟାମି କରୁଛି । ଆମ ନବଣିଦାଦାଙ୍କ ପୁଅ ଟିମେଣା ସାଙ୍ଗରେ ଶଗଡ଼ରେ କ'ଣ ଢିପ୍ ଢିପେଇ ଖେଳୁଥିଲ, ଗୋଡ଼ଟା କେଉଁଆଡେ ଛେଚି ହେଇ ଛେଚେଗ ହୋଇ ଯାଇଚି । ଘରେ ତ କିଛି ଔଷଧ ନଥିଲ, ମୁଁ ଯାଇଥିଲି କେନାଘର ତୋଟାକୁ ବିଶଲ୍ୟକରଣୀ ପତ୍ର ଆଣିବା ପାଇଁ ।

ପରେଶ : ଏ ଉଦୁଉଦିଆ ଖରବେଳଟାରେ ତୁ ଏକୁଟିଆ ତୋଟକୁ ଯାଇଥିଲୁ, ତତେ ଡର ମାଡ଼ିଲ ନାହିଁ ?

ହୀରା : ଡର କାହିଁକି ମାଡ଼ିବ ? ତୋଟାରେ କ'ଣ ବାଘ ଭାଲୁ ଅଛନ୍ତି ?

ପରେଶ : ବାଘ, ଭାଲୁ ବ୍ୟତୀତ ବଢ଼ିଲୁ ଝିଅମାନେ କ'ଣ ଆଉ କାହାକୁ ଭୟ କରନ୍ତି ନାହିଁ ? ହଉ, ଛାଡ଼ ସେ କଥା । ଆମ ଘରେ ଅଏଣ୍ଟମେଣ୍ଟ ଅଛି । ତୁ ମୋ ସାଙ୍ଗରେ ଗ୍ଲେ ମୁଁ ଦେବି ।

ହୀରା : ବୋଉ ଚନ୍ଦରକୁ ନେଇକି ଆଉ କାହା ଘରକୁ ଯାଇଛି ନା କ'ଣ ସିଏ ଔଷଧ ଲଗାଇ ସାରିବଣି ।

ପରେଶ : ତୋ ବାପା କୁଆଡ଼େ ଯାଇଚନ୍ତି ?

ହୀରା : ସିଏ କାମକୁ ଯାଇଚି ।

ପରେଶ : ହୀରା !

ହୀରା : କ'ଣ ?

ପରେଶ : ମୁଁ ଗୋଟେ କଥା କହିବାକୁ ଆସିଥିଲି ।

ହୀରା : ଯାହା କହିବା କଥା ଶୀଘ୍ର କୁହ ପରେଶଭାଇ ! ତୁମକୁ ଆଉ ମତେ ଯଦି ଏକାଠି ଏମିତି କିଏ ଦେଖେ ତା ହେଲେ......

ପରେଶ : କେହି ପରା ନାହାଁନ୍ତି ?

ହୀରା : ଯଦି କିଏ ଆସେ ?

ପରେଶ : ଦେଖିବ ଆମେ ଦୁହେଁ କଥା ବାର୍ତ୍ତା ହେଉଛେ । କଥାବାର୍ତ୍ତା ହେବା କ'ଣ ମନା ?

ହୀରା : ଯାହା କହିବାର ଅଛି ଶୀଘ୍ର କୁହ ପରେଶଭାଇ ! ବୋଉ ଆସି ଯାଇ ପାରେ ।

ପରେଶ : ମୋର ଚାକିରି ହେଇ ଗଲା ।

ହୀରା : (ଖୁସି ହୋଇ) ଏତେ ବଡ଼ ଖୁସି ଖବରଟା ଏତେ ବେଳଯାଏ ଲୁଚେଇକି ରଖିଛ ? ମିଠେଇ ଖୋଇବ ନାହିଁ ?

ପରେଶ : ସେଇ ମିଠେଇ ଦେବାକୁ ଆସିଥିଲି । ଆଁ କଲୁ ତୋ ପାଟିରେ ଏ ଲଡୁଟା ଖୋଇ ଦିଏ ।

ହୀରା : ଉହୁଁ, ମୋ ହାତକୁ ଦିଅ, ମୁଁ ନିଜେ ଖାଇ ଦେବି ।

ପରେଶ : ନାଇଁ ତୁ ଆଁ କର, ମୁଁ ନିଜ ହାତରେ ଖୋଇ ଦେବି ।

ହୀରା : ମତେ ତମେ ଆଗ କହିଲ, ତମର କି ଚାକିରି ହେଲା ?

ପରେଶ : ତୁ କ'ଣ ସେ ସବୁ ବୁଝି ପାରିବୁ ?

ହୀରା : ମାସକୁ କେତେ ଟଙ୍କା ଦରମା ତମେ କହୁନା, ସେଇଟା ଜାଣିଲେ ମୁଁ

ଜାଣି ପାରିବି ତମେ କେତେ ବଡ଼ ଗ୍ଲକିରି ପାଇଲ ।

ପରେଶ : ଦରମା ?

ହୀରା : ହଁ ଦରମା ।

ପରେଶ : ଦରମା ସେମିତି କିଛି ବେଶୀ ନୁହଁ । ଏଇ ସବୁ ମିଶେଇ ୧୭୦୦ଟଙ୍କା

ହୀରା : ସତର ଶହ ? ଭଲ ଗ୍ଲକିରି ତା ହେଲେ ।

ପରେଶ : ତେବେ ଆଁ କର । ମୁଁ ତୋ ପାଟିରେ ମିଠେଇ ଖୋଇ ଦିଏ ।

ହୀରା : ଉହୁଁ, ଆଜି ନୁହଁ । ଏକା ବେଳକେ ପେଟ ପୁରା ଭୋଜିଟେ ଖାଇବି , ଗୋଟେ ଦିଇଟା ମିଠା ନୁହେଁ ।

ପରେଶ : ଆଉ କ'ଣ ଖାଇବୁ କହୁ ନଇଁ । ଆଜି ଆଣିକି ଦେବି ଆଉ ଦିନେ କାହିଁକି ?

ହୀରା : ନାଇଁ ଆଜି ନୁହଁ ପରେଶ ଭଇ । ତମ ବାହାଘର ବେଳକୁ ସବୁ ମିଶେଇ ବଡ଼ ଭୋଜିଟେ ଦେବ ।

ପରେଶ : ହୀରା ! (ରଗିଯାଇ)

ହୀରା : ରଗି ଯାଉଛ କାହିଁକି ? କ'ଣ ମୋତେ ବାହା ହେବନି କି ?

ପରେଶ : ମୁଁ ବାହା ହେବି କି ନ ହେବି ସେ କଥା କ'ଣ ତୁ ଜାଣି ନାହୁଁ ? ମୁଁ ତତେ କେତେ ଭଲପାଏ, ସେ କଥା କ'ଣ ମୁହଁ ଖୋଲି କହିବାକୁ ପଡ଼ିବ ?

ହୀରା : ନା' କହିବା ଦରକାର ନାହିଁ । ମୁଁ ଜାଣିଚି ।

ପରେଶ : କ'ଣ ଜାଣିଚୁ ?

ହୀରା : ମୁଁ ଜ ଣିଚି ତମେ ମତେ ଭରି ଭଲ ପାଅ । ଆଉ ସେଥି ପାଇଁ.........

ପରେଶ : ସେଇଥି ପାଇଁ କ'ଣ ?

ହୀରା : ତମ ବାପା ଆମ ଘରକୁ ବିବାହ ପ୍ରସ୍ତାବ ନେଇକି ଆସିଥିଲେ ।

ପରେଶ : ସତ କହୁଚୁ ?

ହୀରା : ମୁଁ ତୁମକୁ କେବେ ମିଛ କହିଛି ?

ପରେଶ : ତୋ ବାପା କ'ଣ କହିଲେ ?

ହୀରା : ତୁମ ବାପା ଏ ଯାଏ ତୁମକୁ କହି ନାହାନ୍ତି ?

ପରେଶ : ନା, କହି ନାହାନ୍ତି ।

ହୀରା : ତୁମ ବାପା ଯେମିତି ତୁମକୁ କହି ନାହାଁନ୍ତି, ମୋ ବାପା ସେମିତି ମତେ

କହି ନାହାଁନ୍ତି । ମୁଁ ଆଉ ଜାଣିବି କେମିତି ?

ପରେଶ , ତୁ ମତେ ଥଟ୍ଟା କରୁଛୁ ହୀରା ?

ହୀରା : ଆଉ କ'ଣ ତୁମକୁ ଏକା ଥଟ୍ଟା କରିଆସେ ?

ପରେଶ : କଥାଟା କ'ଣ ଟିକେ ଫିଟାଇକି କହ ହୀରା । ମୋ ବାପା କ'ଣ ସତରେ ତୁମ ଘରକୁ ଆସିଥିଲେ ?

ହୀରା : (ଗମ୍ଭୀର ହୋଇ) ଆସିଥିଲେ କିନ୍ତୁ ତୁମ ବିଭଘର ପ୍ରସ୍ତାବ ନେଇ ନୁହଁ ।

ପରେଶ : ଆଉ କାହାର ?

ହୀରା : ଧନୀ ବିଶ୍ୱାଳର ।

ପରେଶ : ଧନୀ ବିଶ୍ୱାଳର ବାହାଘର ? କାହା ସାଙ୍ଗରେ ?

ହୀରା : ଆମ ଘରେ ଆଉ କିଏ ଅଛି ?

ପରେଶ : ମୋ ବାପାଙ୍କର କ'ଣ ମୁଣ୍ଡ ଖରାପ ହେଲଣି ?

ହୀରା : ଏ କଥା ମୋତେ ନ ପଚାରି ତୁମ ବାପାଙ୍କୁ ପଚାର ।

ପରେଶ : ତୋ ବାପା କ'ଣ ଏ ପ୍ରସ୍ତାବରେ ରାଜି ହେଲେ ?

ହୀରା : ରାଜି ନହୋଇ ଉପାୟ ଅଛି ? ଆମେ ପରା ଗରିବ ।

ପରେଶ : ଏ ତୁ କ'ଣ କହୁଛୁ ହୀରା ?

ହୀରା : (କାନ୍ଦ କାନ୍ଦ ହୋଇ) ଗରିବ ଝିଅ ବୁଢାକୁ ନ ହେଲେ ଅନ୍ଧକୁ କି ଛୋଟାକୁ ବାହା ନ ହୋଇ ଆଉ କାହାକୁ ବାହା ହବ ?

ପରେଶ : ମୋ ବାପା ଏତେ ତଳକୁ ଯିବେ ବୋଲି ମୁଁ ଜାଣି ନଥିଲି ।

ହୀରା : ତୁମେ ବାଟଛାଡ଼, ମୁଁ ଯାଏ । କେଉ ଆସି ଯାଇ ପାରେ ।

ପରେଶ : ତୁ ମୋ ଉପରେ ରାଗିଛୁ ହୀରା ?

ହୀରା : ମଣିଷ ନିଜ ଲୋକ ଉପରେ ରାଗ, ଅଭିମାନ କରନ୍ତି ! ତୁମ ଉପରେ ମୋର କି ଜୋର୍ ଅଛି ଯେ ମୁଁ ତୁମ ଉପରେ ରାଗିବି ?

ପରେଶ : ମୋ ଉପରେ ତୋର ଯଦି ଜୋର୍ ନାହିଁ, ତେବେ ମୁଁ କହିବି ମୋ ଉପରେ ଆଉ କାହାରି ଜୋର୍ ନାହିଁ ।

ହୀରା : ଏତିକି ନୁହଁ, ମୋ ମନ ଭୁଲାଇବା ପାଇଁ ତୁମେ ପାହାଡ଼ ପରବତ ପରି ଆହୁରି ବଡ଼ ବଡ଼ କଥା କହିବ, ମୁଁ ଜାଣିଚି ।

ପରେଶ : ଏ ସବୁ ମୋ ମୁହଁର କଥା ନୁହଁ, ମନର କଥା ।

ହୀରା : ଏସବୁ ମନର କଥା ତୁମକୁ କହିବାକୁ ଯେମିତି ଲାଗୁଚି, ସେ ସବୁ ଶୁଣିବାକୁ ମତେ ଆହୁରି ଭଲ ଲାଗୁଚି । ଏମିତି କଥାରେ ଅନେକଙ୍କ ମନ କିଣି ହୁଏ, କିନ୍ତୁ... ... ...

ପରେଶ : କିନ୍ତୁ କ'ଣ ହୀରା ?

ହୀରା : ମନକୁ ସବୁଦିନ ପାଇଁ ନିଜର କରିବାକୁ ହେଲେ ଅନେକଙ୍କ ଇଚ୍ଛା ବିରୁଦ୍ଧରେ ଯିବାକୁ ହେବ । ତମେ ଏ କଥା କ'ଣ ଜାଣିନା ପରେଶ ଭାଇ ?

ପରେଶ : ଜାଣିଚି ?

ହୀରା : ତୁମେ ତୁମ ବାପାଙ୍କ ଇଚ୍ଛା ବିରୁଦ୍ଧରେ ଠିଆ ହୋଇ ପାରିବ ?

ପରେଶ : ଖାଲି ବାପା କାହିଁକି, ଦରକାର ପଡ଼ିଲେ ସମୁଦାୟ ପୃଥିବୀବାସୀଙ୍କ ବିରୁଦ୍ଧରେ ଠିଆ ହେବାର ଶକ୍ତି ମୋର ଅଛି ।

ହୀରା : ଏ ସବୁ କାମରେ ଶକ୍ତି ଅପେକ୍ଷା ସାହସ ବେଶୀ ଦରକାର ।

ପରେଶ : ତୁ ମତେ ଡରକୁଳା ବୋଲି ଭାବୁଚୁ କାହିଁକି ହୀରା ?

ହୀରା : ଭାବିବି ନେଇଁ, ହେଇ ଦେଖୁନା, ଖରାବେଳଟା କେହି କୁଆଡ଼େ ନଥିବା ବେଳେ ଲୁଚି ଛପି ଆସି ତମେ ମୋ ସାଙ୍ଗରେ କଥା ହଉଚ ।

ପରେଶ : ଓଃ (ହସିଲା) ଏଇଥି ପାଇଁ ମୁଁ ଡରକୁଳା ?

ହୀରା : ନୁହଁ ଆଉ କ'ଣ (ହସିଲା) (ଏଇ ସମୟରେ ଦୂରରୁ ଶୁଭିଲା –ହୀରା ! ଏ ହୀରା ! ଆଲେ ଏ ହୀରା !)

ହୀରା : (ବ୍ୟସ୍ତ ହୋଇ) ବୋଉ ଆସିଲାଣି, କ'ଣ କରିବା ?

ପରେଶ : ମୁଁ ପଳେଉଚି । (ଦାଣ୍ଡବାଟେ ଯିବାକୁ ପ୍ରସ୍ତୁତ ହେଉଥିଲେ)

ହୀ.ବୋଉ: (ଦୂରରୁ) କିଲେ ଡାକିଟା ଏମିତି ଠିଆ ମେଲା କାହିଁକି କରିଚୁ ?

ହୀରା : (ପରେଶକୁ ଅଟକାଇ) ନା, ଏପଟରୁ ବୋଉ ଆସୁଚି । ତମେ ଏଇ ବାରିବାଟେ ଗଳି ଯାଅ ।

ପରେଶ : ତୁ ଏ ମିଠାଟା ଖାଇଦେ (ହୀରାର ପାଟିରେ ମିଠାଟା ମାଡ଼ି ଦେଇ ଧାଇଁ ଧାଇଁ ଗଳିଗଲା । ମଞ୍ଚ ଅନ୍ଧକାର ହେଲା ।)



## ପଞ୍ଚମ ଆଲେଖ୍ୟ

(ଗୋବରାର ଘର । ସମୟ ସଭାବେଳ । ପିଣ୍ଡାରେ ବସିଛି ହୀରା । ଚନ୍ଦର ପିଣ୍ଡାତଳେ ଖପରଡ଼ିଆଁ ଖେଳୁଛି ।)

ହୀରା : ଚନ୍ଦର !

ଚନ୍ଦରା : କ'ଣ ହେଲ ?

ହୀରା : ହେଇ ଅନେଇଲୁ ।

ଚନ୍ଦରା : କାହିଁ କ'ଣ ?

ହୀରା : ହେଇ ଅନା । ଏଇଟା କ'ଣ ଦେଖିଲୁ ?

ଚନ୍ଦରା : ମୁଁ ଭଲକି ଦେଖି ପାରିଲି ନାହିଁ, ଆଉ ଥରେ ଦେଖା ।

ହୀରା : ନାହିଁ ତୁ ଆଁ କର ।

ଚନ୍ଦରା : ଆଁ କଲି, କ'ଣ ଦବୁ ଦେ ।

ହୀରା : ଆଖି ବନ୍ଦ କର ।

ଚନ୍ଦରା : ବନ୍ଦ କଲି ।

ହୀରା : (ହସିଲା) ଆରେ ମୁଁ କହିଲି ଆଖି ବନ୍ଦ କରିବାକୁ, ତୁ କଣ ଆଖି ପାଟି ସବୁ ଏକାବେଳେ ବନ୍ଦ କରି ଦେଲୁ ? ଆଁ କର ।

ଚନ୍ଦରା : (ଆଁ କଲା)

ହୀରା : (ଚନ୍ଦର ପାଟିରେ ଗୋଟିଏ କୋଳି ଖୋଇଦେଲା) କେମିତି ଲାଗୁଚି ? ବଢ଼ିଆନା ?

ଚନ୍ଦରା : ଭାରି ବଢ଼ିଆ । ବଢ଼ିଆ କୋଳି । ଆଉ ଗୋଟେ ଦେ ।

ହୀରା : ଆଉ କୋଉଠୁ ଆଣିବି ?

ଚନ୍ଦରା : ଏ ଗୋଟାକ କୋଉଠୁ ଆଣିଲୁ ?

ହୀରା : ମୁଁ ଆଜି ଜଙ୍ଗି ଘରକୁ ଯାଇଥିଲି ଯେ ସିଏ ଦେଇଥିଲା ।

ଚନ୍ଦରା : ଜମା ଗୋଟେ କୋଳି ଦେଇଥିଲା ?

ହୀରା : ନାହିଁ, ମେଞ୍ଚେ ଦେଇଥିଲା । ବଢ଼ିଆ କୋଳିତ, ଖାଉ ଖାଉ ସବୁ ଖାଇ ଦେଲି ।

ଚନ୍ଦରା : (ହୀରାର ଲୁଗା କାନିକୁ ହାତ ମାରି) ତୋ କାନିରେ କ'ଣ ବାନ୍ଧିଚୁ ?

ହୀରା : ନାଇଁ ? କିଛି ନାହିଁ ।

ଚନ୍ଦରା : ଏଗୁଡ଼ା କ'ଣ ?

ହୀରା : ଏଗୁଡ଼ା ? ଏ ଗୁଡ଼ ଗୋଡ଼ି ।

ଚନ୍ଦରା : ଗୋଡ଼ି ଗୁଡ଼ା କାଇଁକି ବାନ୍ଧିଚୁ ?

ହୀରା : ମୁଁ କୋଳି ବାନ୍ଧିଥିଲି ତୋ ହାତ ବାଜିକି ସେଗୁଡ଼ା ଗୋଡ଼ି ହେଇଗଲା ।

ଚନ୍ଦରା : ତୁ ମିଛ କୋଉଚୁ ।

ହୀରା : ତୋ ଆଖିକି ସାତତାଳ ପାଙ୍କ ଭିତରେ ଥିବା ଜିନିଷବି ଦିଶିବ ।

ଚନ୍ଦରା : ଦେ, ମତେ ଆଉ ଯୋଡ଼େ କୋଳି ଦେ ।

ହୀରା : ଏକଦମ ବିଲଟା ?

ଚନ୍ଦରା : ମୋ ଦେଇ, ବଢ଼ିଆ ଦେଇ, ସୁନା ଦେଇ । ମତେ କୋଳି ଦବ, ଯୋଡ଼େ କୋଳି, ଏଡ଼େ ଏଡ଼େ ଯୋଡ଼େ ।

ହୀରା : ଆରେ ସୁନା ଦେଇ ନୁହଁ ।

ଚନ୍ଦରା : ଆଉ କି ଦେଇ ?

ହୀରା : ହୀରା ଦେଇ, ହୀରା । ସୁନା ନୁହଁ, ହୀରା ଜାଣିଲୁ ? ଏକଦମ୍ ଚକ୍ ଚକ୍ ।

ଚନ୍ଦରା : ସୁନା ଠୋଉଁ କ'ଣ ହୀରା ଆହୁରି ଭଲ ?

ହୀରା : ଏକଦମ୍ ଭଲ । ଚିକ୍ ଚିକ୍ ।

ଚନ୍ଦରା : ମୋ ଦେଇ, ହୀରା ଦେଇ । ଭରି ବଢ଼ିଆ ଦେଇ । ମୋ ଦେଇକି ଜୟ । ଦେ କୋଳି ଦେ ।

ହୀରା : ମୋ ପେଇଁ ଗୋଟେ କାମ କରିଦେଲେ ତତେ ବିଲଟା ନୁହେଁ ଗୁରିଟା ଖୁବ୍ ବଢ଼ିଆ ବଢ଼ିଆ କୋଳି ଦେବି ।

ଚନ୍ଦରା : ଆଗେ ଦୋଉନହିଁ ।

ହୀରା : ନାଇଁ ସେମିତି ହଉନେଇଁ । ତୁ ଆଗ ମୋ କାମ କରିଦବୁ, ତାପରେ ଯାଇଁ କୋଳି ।

ଚନ୍ଦରା : କି କାମ ? ଦୋକାନକୁ ଯିବି ?

ହୀରା : ନା ।

ଚନ୍ଦରା : ଫୁଲ ଆଣିବି ?

ହୀରା : ଉହୁଁ ।
ଚନ୍ଦରା : ଆଉ କି କାମ ତୁ କୋଉ ନାହୁଁ ?
ହୀରା : ଗୋଟେ ଜାଗାକୁ ଯିବୁ ?
ଚନ୍ଦରା : କୋଉ ଜାଗାକୁ ?
ହୀରା : ଏଇ...ପରେଶ ଭାଇ ଘରକୁ ।
ଚନ୍ଦରା : ମୁଁ ତାଙ୍କ ଘରକୁ ଯାଉ ନେଇଁ ।
ହୀରା : କାହିଁକି ଯାଉ ନାହୁଁ ?
ଚନ୍ଦରା : ଯାଉ ନେଇଁତ କହଲି, କାହିଁକି ଯାଉ ନେଇଁ ପୁଣି କ'ଣ ?
ହୀରା : ହଉ ହେଲା । ତାଙ୍କ ଘରକୁ ନଯା । ତାଙ୍କ ଘର ଆଗରେ ଯେରେ ବୁଲ ବୁଲି କରି ପଳେଇ ଆସିବୁ ।
ଚନ୍ଦରା : ତାଙ୍କ ଘର ଆଗରେ କାହିଁକି ବୁଲିବି ?
ହୀରା : ପରେଶ ଭାଇ କାଲି କଟକରୁ ଆସିବାର ଥିଲା ଆସିଲେଣିକା ନାଇଁ ଦେଖି ଆସିବୁ ।
ଚନ୍ଦରା : ତୋର ତାଙ୍କ ଠେଇଁ କି କାମ ?
ହୀରା : ନାଇଁ... କିଛି କାମ ନାହିଁ ଯେ...
ଚନ୍ଦରା : ମୁଁ ଯାଇ ପାରିବି ନେଇଁ ।
ହୀରା : କୋଳି ଖାଇବୁ ନେଇଁ ?
ଚନ୍ଦରା : ଦୋଉ ନୋଇଁ ।
ହୀରା : ତୁ ଯାଆ ଟିକେ ଦେଖି ଆସିବୁ, ମୁଁ ଦେବି । ହେଇ ଦେଖ୍ ଏଇ ଗୁରିଟା କୋଳି ତୋପେଇଁ ରହିଲା । ଏ କୋଳି ମୁଁ ଆଉ କାହାକୁ ଦେବି ନାହିଁ । ତୋ ପାଇଁ ରଖିଲି ।
ଚନ୍ଦରା : ଦୋଉ ନେଇଁତ ଖାଲି ଦେଖୋଉଚୁ ।
ହୀରା : ତୁ ଟିକେ ଯାଉନଇଁ ?
ଚନ୍ଦରା : ଆଖୁ ଛୁଇଁକି କୋଉଚି ମୁଁ ନିଶ୍ଚେ ଯିବି ।
ହୀରା : ଯିବୁତ ?
ଚନ୍ଦରା : ଯିବି, ଯିବି, ଯିବି । କୋଳି ଦେ ।
ହୀରା : ନେ । ଯା' ଝଅଟ ଯା ।
ଚନ୍ଦରା : (କୋଳି ଖାଉ ଖାଉ ଟାକର ଫୁଟାଇଚି) ଭରି ବଢିଆ ନାଗୁଚି ।

ହୀରା : ଏଥର ଯା ।

ଚନ୍ଦରା : ରହ, ମୁଁ ଟିକେ ଖାଇସାରେ ।

ହୀରା : ଖାଇ, ଖାଇକି ଯାଉନଥି ?

ଚନ୍ଦରା : ମତେ ଭରି ଶୋଷ ହେଲାଣି । ମତେ ପାଣି ଦେଲୁ ।

ହୀରା : ଯାଉ ନୋଉଁ ଆସିଲେ ପିଇବୁ ।

ଚନ୍ଦରା : ମୁଁ ଯାଇପାରିବି ନେଇଁ ।

ହୀରା : କିରେ ତୁ ପା କଇଲୁ ଯିବୁ ବୋଲି ?

ଚନ୍ଦରା : କାଇଁକି ତୁ ଯାଉନଥି ?

ହୀରା : ମୁଁ ଯାଆନ୍ତି ଯେ ଘରେ କେହି ନାହାଁନ୍ତି ।

ଚନ୍ଦରା : ବୋଉ କୁଆଡ଼େ ଯାଇଚି ?

ହୀରା : ଗାଧୋଇ ଯାଇଚି ?

ଚନ୍ଦରା : ମନ୍ଦରା ଘର ?

ହୀରା : ସିଏ କ'ଣ ମତେ କଇକି ଯାଇଚି ?

ଚନ୍ଦରା : ମୁଁ ଘରେ ଅଛି ତୁ ଯା ।

ହୀରା : ମୁଁ ଯିବାର ହେଇଥିଲେ ତତେ କାଇଁକି ଖୋସାମତି କରିଥାଆନ୍ତି ?

ଚନ୍ଦରା : ତୋ କାମ, ତୁ ଯିବୁ ନୋଉଁ, ମୁଁ କାଇଁକି ଯିବି ?

ହୀରା : ଯିବୁ ନୋଉଁତ ମୋ କୋଳି କାଇଁକି ଖାଉଥିଲୁ ? ମୋ କୋଳି ଦେ ।

ଚନ୍ଦରା : ଖାଇ ସାରିଲିଣି, ଆଉ ଅଛି ଯେ ଦେବି ?

ହୀରା : ତୁ ଯିବୁ ନୋଉଁ ?

ଚନ୍ଦରା : ନାଇଁ ମୁଁ ଯିବିନେଇଁ ।

ହୀରା : ସେଠିକି ଯିବୁ ନୋଉଁ ପୁଣି କୁଆଡ଼େ ବାହାରିଲୁ ?

ଚନ୍ଦରା : ଆଉ କଣ ଘରେ ବସିଥିବି ? ମୁଁ ମୋର ଯାଉଚି ଖେଳିବି ।

ହୀରା : ହଉ ଯା, କାନିରେ ଗଣ୍ଠି ପକେଇଲି ବୋଉକୁ କହି ତତେ ଯଦି ଆଜି ମାଡ଼ ନଖୋଇଚି ମତେ କହିବୁ ।

ଚନ୍ଦରା : ଦେଇ ଅନେଇଲୁ ସେ ବରଗଛ ମୂଳେ କିଏ ?

ହୀରା : କିଏ, କାଇଁ ?

ଚନ୍ଦରା : ଭଲକି ଅନେଇଲୁ ସିଏ କିଏ ?

ହୀରା : କାଇଁମ ?

ଚନ୍ଦର : ହେଇ ଦେଖୁ ନୋଉଁ । ବରଗଛକୁ ଆଉଜିକି ପରେଶ ଭାଇ ଠିଆ ହେଇଚି । ଡାକି ଦେବି ?

ହୀରା : ନାଇଁ ତୁ ଯା ଖେଳିବୁ ।

ଚନ୍ଦର : ବୋଉକୁ କହି ମାଡ଼ ଖୋଇବୁ ନଇଁତ ?

ହୀରା : ନାଇଁ ଯା । ଏ ଶୁଣୁ ଶୁଣୁ । ଆଉ ଦିଇଟା କୋଳିଥିଲ ନେ ।

ଚନ୍ଦର : ମୋ ଦେଇ ସୁନା ଦେଇ ।

ହୀରା : ଫେର୍ ?

ଚନ୍ଦର : ନାଇଁ, ନାଇଁ ମୋ ଦେଇ ହୀରା ଦେଇ, ହୀରା ଦେଇ ।

ହୀରା : ହଁ, ଯା' ଖେଳିବୁ । ଆରେ, ପରେଶ ଭାଇ ସେଠି ଠିଆ ହେଇ କ'ଣ କରୁଚ ? ଘରକୁ ଆସୁନ ?

ପରେଶ : ଏଇଠି ଏମିତି ଠିଆ ହେଇ ଚନ୍ଦରାର କୋଳିଖିଆ ଦେଖୁଥିଲି ।

ହୀରା : ଦାଣ୍ଡଟାରେ ଠିଆ ହେଇ ? ଘରକୁ ଆସ ।

ପରେଶ : ଘରେ ତୋ ବୋଉ ନାହାଁନ୍ତି ?

ହୀରା : ମୋ ବୋଉକୁ ତ ତମର ଭାରି ଡର ।

ପରେଶ : ମୁଁ କାଇଁକି ଡରିବି ?

ହୀରା : ମୁଁ ତ ସେଇ କଥା ପଗ୍ଚରୁଚି ।

ପରେଶ : ତୁ ଡରନୁ ତ ?

ହୀରା : (ହସ)

ପରେଶ : (ହସ)

ହୀରା : (ସପ ବିଛେଇ ଦେଇ) ବସ, ଏଇ ପିଣ୍ଡାରେ ବସ ।

ପରେଶ : ହଉ ହେଲା, ହେଲା । ମୁଁ ବସିଲି । (ବସିଲା)

ହୀରା : କୋଉ ଦିନ ଆସିଲ ?

ପରେଶ : କାଲି ରାତିରେ ।

ହୀରା : ସେଠି ସବୁ ଭଲତ ?

ପରେଶ : ନୂଆ ଚାକିରି, ଏଇଲେ ଭଲମନ୍ଦ କ'ଣ ଜାଣି ହବ ? ତୋ ବୋଉ କୁଆଡ଼େ ଯାଇଚନ୍ତି ?

ହୀରା : ଗାଧୋଇ ।

ପରେଶ : କେତେବେଳେ ଫେରିବେ ?

ହୀରା : କାହିଁକି ତା ପେଇଁ କ'ଣ ଆଣିଚ କି ?
ପରେଶ : ନାଇଁ ଯେ...
ହୀରା : ଡରିବା ଦରକାର ନାହିଁ । ପୋଖରୀ ଏଠିକି ଅଧକୋଶ ବାଟ । ଆମ ସାଇର ପାଣୁଆ ମାଆ, କଇଁ ବଡ଼ମା, ଗୁରିଆ ମାଆ ସମସ୍ତେ ସାଙ୍ଗ ହେଇ ଯାଇଚନ୍ତି । ପୋଖରୀ ତୁଠରେ ଏଇଲେ ସଭା ବସିଥିବ । ଏତେ ସହଜ ସଭାଙ୍ଗିବ ନା ସିଏ ଅସିବ ?
ପରେଶ : ହୀରା ହାତଟା ଦେଖେଇଲୁ ।
ହୀରା : ହାତ ଦେଖେଇବି ? ତମେ କ'ଣ ଜଉତିଷ ପାଠ ପଢିଇଣିନା କ'ଣ ?
ପରେଶ : ତୁ ହାତ ଦେଖାଇ ନଉଁ ।
ହୀରା : ହଉ ଦେଖ ।
ପରେଶ : ବାଆଁ ହାତ ନୁହଁ ଡାହାଣ ହାତ ।
ହୀରା : ଉହୁଁ । ବାଆଁ ହାତନା ।
ପରେଶ : ତୁ ଡାହାଣ ହାତଟା ଦେଖା ।
ହୀରା : ଏଥର ହେଲା ? (ଡାହାଣ ହାତ ଦେଖାଇଲା)
ପରେଶ : ହଁ, ହେଲା । ନେ ଧର (ସ୍ନୋ, ପାଉଡ଼ର ଦେଲା)
ହୀରା : ଏ ସବୁ କ'ଣ ହେବ ?
ପରେଶ : କ'ଣ ହବ ମୁଁ ପୁଣି ବୁଝେଇ ଦେବି ?
ହୀରା : ବୋଉ ଏ ସବୁ ଦେଖିଲେ ମତେ ଗାଳି ଦବ ।
ପରେଶ : ବୋଉ କାହିଁକି ଦେଖିବେ ?
ହୀରା : ସ୍ନୋ, ପାଉଡ଼ର ଲଗାଇଲେ ବୋଉ ଦେଖିବ ନେଇଁ ?
ପରେଶ : ଦେଖନ୍ତୁ ?
ହୀରା : ମୋ ଚୁଟି ପିଠି ରହିବ ନେଇଁ ।
ପରେଶ : ଯାହା ହେଲେବି ମୁଁ ଏ ଜିନିଷ ତୋ ପାଇଁ ଆଣିଚି ଆଉ ଫେରଇ ନେଇ ପାରିବି ନେଇଁ ।
ହୀରା : ଏ ସବୁ ମୁଁ ବୋଉ ଆଖିରୁ କେମିତି ଲୁଚେଇ ରଖିବି ?
ପରେଶ : ମୋ ମନ ଭରି ଦୁଃଖ ହବ ।
ହୀରା : ମୁଁ ଏସବୁ ରଖିଲେ ବୋଉଠୁ ମାଡ଼ ଗାଳି ଖାଇବି ।
ପରେଶ : ଠକି ଦେଇ ପାରିବୁ ନାହୁଁ ?

(ଦୂରରୁ ଶୁଭିଲା – ଆଲୋ ଏ ହୀରା ! କୁଆଡ଼େ ଗଲୁକି ?)

ହୀରା : ବୋଉ ଆସିଲାଣି ।

(ପୁଣି ଶୁଭିଲା ‥ ଆଲୋ ତୋ ଆଖିକି କଣ ଦିଶୁନେଇଁ ? ଗଲା ଏ ନିଅଁଶି ଘର ଗାଈଟା ଶାଗ କିଆରିଟା ଉଜାଡ଼ି ଦେଲା । ହାସ୍ ହାସ୍ । ଯାଉଚୁନା ।)

ହୀରା : ବୋଉ ବାଡ଼ିପଟ ବାଟେ ଆସୁଚି । ତମେ ଦାଣ୍ଡପଟେ ଝଅଟ ପଳା ।

ପରେଶ : ମୁଁ ଯାଉଚି ।

ହୀରା : ତମେ ଝଅଟ ଯା । ବୋଉ ଦେଖିଲେ.....

(ହୀରବୋଉଙ୍କ କଣ୍ଠ ପୁଣି ଶୁଭିଲା–ଆଲୋ ଏ ହୀର ! କୋଉଆଡ଼େ ପଶି ମରିଚୁ ? ଏଡ଼େ ଝିଅଟେ ହେଲୁଣୁ ବାରିଘରକୁ ତୋର ଟିକେ ନିଘା ନାହିଁ ?)

ପରେଶ : ମୁଁ ଯାଉଚି ।

ହୀରା : ଏ ସ୍ନୋ ପାଉଡ଼ର ନେଇଯା ।

ପରେଶ : ମୋ ରାଣ ହୀରା ତୁ ସେ ସବୁ ରଖ, ମୁଁ ଯାଉଚି । [ପ୍ରସ୍ଥାନ]

ହୀରାବୋଉ : [ପ୍ରବେଶି] ହୀରା ! ଏ ହୀରା !

ହୀରା : ଯାଉଚି ବୋଉ !

ହୀରାବୋଉ : କୁଆଡ଼େ ଯାଇଥିଲୁକି ?

ହୀରା : କୁଆଡ଼େ ନାହିଁ ।

ହୀରାବୋଉ : ମୁଁ ଏତେ ଡାକୁଚି ତତେ ଶୁବୁ ନେଇଁ ?

ହୀରା : ମୁଁ ଦାଣ୍ଡ ପଟରେ ଥିଲି ।

ହୀରାବୋଉ : ଦାଣ୍ଡ ପଟରେ କାହା ସାଙ୍ଗରେ ଗପ ଲଗେଇ ଥିଲୁ ?

ହୀରା : କାଇଁ, ନାଆଁ ତ ।

ହୀରାବୋଉ : ନାଆଁ ତ ? ତୋ କଥାବାର୍ତ୍ତା ମୁଁ ଶୁଣିଚି ।

ହୀରା : ନାଇଁ, ଏଇ କଇଁ ସାଙ୍ଗରେ କଥା ହେଉଥିଲି ।

ହୀରାବୋଉ : କଇଁ ଆଇଥିଲା ? କୁଆଡ଼େ ଗଲା ?

ହୀରା : ପଳେଇଲାଣି ।

ହୀରାବୋଉ : ପଳେଇଲା ?

ହୀରା : ହଁ ।

ହୀରା‌ବୋଉ : ପିଣ୍ଡା ଉପରେ ସେଗୁଡ଼ା କଅଣ ଥୁଆ ହେଇଚି ?

ହୀରା : କାହିଁ ? ହଁ, ସେଗୁଡ଼ା ? ସେ ଗୁଡ଼ା ସ୍ନୋ ଡବାଟେ ଆଉ ପାଉଡ଼ର ଡବାଟେ ।

ହୀରାବୋଉ : ଏ ସବୁ ତୁ କୋଉଠୁ ଆଣିଲୁ ?

ହୀରା : ନାଇଁ...ଏଇ...

ହୀରାବୋଉ : ନାଇଁ, ଏଇ କ'ଣ ? କୋଉଠୁ ଆଣିଲୁ କହ ? ଏ ସବୁ କିଏ ଦେଇଚି ?

ହୀରା : କଇଁ ଆଣିଥିଲା ।

ହୀରାବୋଉ : କଇଁ କାହିଁକି ଆଣିଥିଲା ?

ହୀରା : ମୋ ପାଖରେ ମୁଣ୍ଡ ବାନ୍ଧିବ ଆଉ ସ୍ନୋ ପାଉଡ଼ର ଲଗେଇବ ।

ହୀରାବୋଉ : ଆଉ ପଳେଇଲା କାହିଁକି ?

ହୀରା : ତେଲ ଶିଶିଟା ଛାଡ଼ି ଆଇଥିଲା । ଯାଇଚି ଆଣିବ ।

ହୀରାବୋଉ : ପର ଜିନିଷ ପଦାରେ ଥୋଇଚୁ କାହିଁକି ଘରକୁ ନେଇଯା । ଦାଣ୍ଡ ପଟଟା, କିଏ ଯଦି କ'ଣ ଉଠେଇ ନବ ?

ହୀରା : ତୁ କ'ଣ ଏଯାଏ ଗାଧେଇ ଯାଇ ନହଁ ?

ହୀରାବୋଉ : ଗଲି ଆଉ କୋଉଠି ? ପାଣୁଆ ମାଆ ଧାନ ଉଷୋଉଁଚି । ତାକୁ ଡାକିବାକୁ ତାଙ୍କ ଅଗଣା ପାଖରେ ଠିଆ ହେଇଚି, ରତନୀ କହିଲା– ବଡ଼ମା ତମ ବାଗିରେ ଗାଈ ପଶିଚି । ଗାଈ ନାଆଁ ଶୁଣି ମୁଁ ଧାଇଁଚି । ମୁଁ ଏବେ ଗାଧେଇ ଯାଉଚି । ତୁ ବାରିଘରକୁ ଭଲକି ନଜର ରଖିଥିବୁ ।

ହୀରା : ହଉ ଯା ।

[ମଞ୍ଚ ଅନ୍ଧକାର ହେଲା]

# ଷଷ୍ଠ ଆଲୋକ

[ ଗୋବର୍ଦ୍ଧନ ଘର । ସମୟ—ସକାଳ ]

ଚନ୍ଦରା : ବୋଉ ! ଏ ବୋଉ ! କୋଉଠି ଗଲୁ ?

ହୀରା : ଆରେ, ବୋଉ ବୋଉ କାହିଁକି ହଉଚୁ ?

ଚନ୍ଦରା : ତୁ କ'ଣ ପାଇବୁ ? ବୋଉ କୁଆଡ଼େ ଗଲା ?

ହୀରା : ହାତରେ ସିଏ କ'ଣ ?

ଚନ୍ଦରା : ତୁ କହିଲୁ ଇଏ କ'ଣ ହୋଇଥିବ ?

ହୀରା : ଗୁଡ଼ ?

ଚନ୍ଦରା : ଗୁଡ଼ କ'ଣ ସାଲୁ ପତରରେ ଆଣନ୍ତି ?

ହୀରା : ଆଉ କ'ଣ ?

ଚନ୍ଦରା : ତୁ କହନାହିଁ ଆଉ କଣ ହୋଇଥିବ ?

ହୀରା : ତୁ ମତେ ଟିକେ ଦେଖେଇ ନହିଁ ?

ଚନ୍ଦରା : ନାହିଁ, ନାହିଁ, ଦେଖେଇ ଦେଲେତ ତୁ କହିଦବୁ । ତୁ ଶୁଙ୍ଘିକି କହୁନହିଁ ?

ହୀରା : (ଶୁଙ୍ଘିବା) କାହିଁ .....ମୁଁ କିଛି ଜାଣି ପାରୁନେଇଁ । ଆରେ ତୁ ଟିକେ ଠିଆହ ଏମିତି ଘୋଡ଼ାଙ୍କ ପରି ଏକଡ଼ ସେକଡ଼ ଡେଉଁଚୁ କାହିଁକି ?

ଚନ୍ଦରା : ଦେଇ ଆଜି ନୁହଁ ବଢ଼ିଆ ତରକାରୀ ହବ ।

ହୀରା : ଆରେ ସେଗୁଲ ଛତୁ କିରେ ?

ଚନ୍ଦରା : ନାହିଁ, ତୁ ମୋଟେ କହି ପାରିବୁ ନେଇଁ । ହେଇ ଦେଖେ, ଇଏ କ'ଣ ?

ହୀରା : ଆରେ ଇଏତ ମାଉଁସ । ତୁ କୋଉଠୁ ଆଣିଲୁ ?

ଚନ୍ଦରା : ମୁଁ ଯୋଉଠୁ ଆଣିଲି ? ତୁ ସେଥିରୁ କ'ଣ ପାଇବୁ ? ବୋଉ କୁଆଡ଼େ ଯାଇଚି ?

ହୀରାବୋଉ : (ପ୍ରବେଶି) କ'ଣ କିରେ ଚନ୍ଦର, କାହିଁକି ଏଡ଼େ ପାଟି କରୁଚୁ ?

ଚନ୍ଦରା : ଦେଖିଲୁ ବୋଉ ଇଏ କ'ଣ ?

ହୀରାବୋଉ : ଇଏତ ଶାଗୁଆଡି । ଆରେ ଶାଗୁଆଡି କୋଉଠୁ ଆଣିଲୁ ? କିଏ ଦେଲା ?

ଚନ୍ଦରା : ବାପା ।

ହୀରାବୋଉ : କୋଉଁଠୁ ଆଣିଲେ ?

ଚନ୍ଦରା : ଆଜି ନୁହଁ, ମଙ୍ଗି ସାଇରେ ଖାସି ମରା ହେଇଚି । ଆମ ଗାଁ'ର ସବୁଲୋକ ସେଇଠି ଘେରିକି ଠିଆ ହେଇଚନ୍ତି । ବାପା ମତେ କହିଲା ଏ ମାଉଁସ ନେଇଯା ବୋଉକୁ ଦେବୁ, ତରକାରୀ କରିଦବ ।

ହୀରା : ଇଏ କେତେ ମାଉଁସ କିରେ ଚନ୍ଦର ?

ଚନ୍ଦରା : ମୁଁ କେମିତି ଜାଣିବି ?

ହୀରାବୋଉ : ଅଢ଼େଇଣ କି ତିନିଶ ହେଇଥିବ, ଆଉ କେତେ ?

ଚନ୍ଦରା : ବାପା କହିଚି ଖରବେଳକୁ ତରକାରୀ କରିଥିବୁ । ସିଏ କାମରୁ ଆସିକି ଖାଇବ ।

ହୀରାବୋଉ : ଶାଗୁଆଡି ପେଇଁ ଟଙ୍କା କୋଉଠୁ ଆଣିଲେ ? କ'ଣ ବାକିରେ ଆଣିଲେ ?

ଚନ୍ଦରା : ମାଧୁଆ ଜେନା ଖାସି ମାରିଚି । ସିଏ ଜମା କାହାକୁ ବାକିରେ ଦେଉନେଇଁ । ବାପା ଯେତେ କହିଲା ସିଏ ନାହିଁ କଲା ।

ହୀରାବୋଉ : ତୋ ବାପା ଟଙ୍କା କୋଉଠୁ ଆଣିଲେ ?

ଚନ୍ଦରା : ମୁଁ ମାଉଁସ ପାଖରେ ଜଗିକି ରହିଲି । ବାପା ଗଲା, ଆଜି ଯାହାର କାମକୁ ଯିବ ତା'ଠୁ ଟଙ୍କା ଆଣିକି ମାଉଁସ ଆଣିଲା ।

ହୀରାବୋଉ : ଖାଲି ଶାଗୁଆଡି ଖାଇଲେ କ'ଣ ପେଟ ପୂରିବ ?

ଚନ୍ଦର : ଚାଉଳକି ଭାତ ରନ୍ଧିଦବୁ ।

ହୀରାବୋଉ : ଚାଉଳ କ'ଣ ଅଛି ?

ଚନ୍ଦର : ଦୋକାନରୁ ଆଣିବୁ ।

ହୀରାବୋଉ : ଦୋକାନୀ କ'ଣ ମୋ ମୁହଁ ଦେଖିକି ଚାଉଳ ଦବ ?

ଚନ୍ଦର : ଆଉ କାହାଘରୁ ଚାଉଳ ଧାର ଆଣୁନେଇଁ ?

ହୀରାବୋଉ : କିଏ ମତେ ଚାଉଳ ଦବ ?

ଚନ୍ଦର : ତତେ ଯଦି କେହି ଦେବେ ନେଇଁ ଦେଇକି କୋଉଠୁ ଆଣିବ ?

ହୀରବୋଉ : ସିଏ ଏଡ଼େ ଝିଅଟେ କାହା ଘରକୁ ଯିବ ?

ଚନ୍ଦର : କାହିଁକି ? ପରେଶ ଭାଇ ଘରକୁ ?

ହୀରା : ଦେବି ଗୋଟେ ଗୁପୁଡ଼ା ଯେ, ମୁଁ କାହିଁକି ତାଙ୍କ ଘରକୁ ଯିବି ?

ଚନ୍ଦର : ନଯା ମୋର କ'ଣ ଗଲା ?

ହୀରବୋଉ : ହଉ, ତୁ ଯା ଖେଳିବୁ ଯା ।

ଚନ୍ଦର : ଆଉଲା ବେଳକୁ ତରକାରୀ କରିଥିବୁ ?

ହୀରବୋଉ : ହଁ, ହଁ, ଯା ।

ଚନ୍ଦର : ମୁଁ ଆଣିଚି ମତେ ଖେଉଡ଼ୁ ଦବୁ । (ପ୍ରସ୍ଥାନ)

ହୀରବୋଉ : ହଁ, ତୁ ଯା ଖେଳିବୁ । ହୀର, ମାଉଁସକୁ ରୋଷେଇ ଘର ଶିକାରେ ଥୋଇଦେ । ମୁଁ ସାଇଆଡୁ ଆସେ । ଦେଖେ କାହାଘରୁ ଯଦି ଗୁଲଜ ଦି'ମାଣେ ମିଳିବ ।

ହୀର : ବୋଉ ତୁ ଝଅଟ ଆସିବୁ ।

ହୀରାବୋଉ : କ'ଣ କୋଉଠି ଥୋଇଚି ଧରିକି ପକେଇ ଆସିବି ? ତୁ ଥିବୁ ଘର ଦୁଆର ମେଲା ପଡ଼ିଚି କୁଆଡ଼େ ଯିବୁ ନୋଉଁ । ବାରିକି ଟିକେ ନିଘା ରଖିଥିବୁ । ବୁଲା ଗୋରୁ ପଶିକି ଶାଗ ଖାଇଯିବ ।

ହୀରା : ହଁ, ତୁ ଯା ମୁଁ ଅଛି ।

[ ମଞ୍ଚ ଅନ୍ଧକାର ହେଲା ]

# ସପ୍ତମ ଆଲୋକ

(ଗୋବରାର ଘର । ସମୟ ଅପରାହ୍ନ । ଗୋବରା ଗାଧୋଇ ପାଧୋଇ ଫେରିଛି । ପିନ୍ଧିଛି ଓଦା ଲୁଗା ।)

ଗୋବରା : ହୀରା ! ହୀରା ! ଏ ହୀରା ! କୁଆଡ଼େ ଗଲକି ସବୁ ? ଘର ଦୁଆର ସବୁ ମେଲା, କୁଆଡ଼େ ଯାଇଚ ବଅଁଶ ଯାକ ?

ହୀରା : ଯାଉଚି ବାପା ।

ଗୋବରା : ତୁ କୁଆଡ଼େ କି ?

ହୀରା : ମୁଁ ଏଇ ବାରିପଟରେ ବସିଥିଲି ।

ଗୋବରା : କିଲେ ବାରିପଟରେ କାହିଁକି ବଇଥିଲୁ ?

ହୀରା : ବୁଲା ଗୋରୁ ପଶୁଚନ୍ତି ବୋଲି ଶାଗ କିଆରୀକି ଅନେଇଁ ଥିଲି ।

ଗୋବରା : କାହିଁକି ତୋ ବୋଉ କୁଆଡ଼େ ଗଲା କି ?

ହୀରା : ସାଇ ଆଡ଼େ ଯାଇଚି ।

ଗୋବରା : ଏତେ ବେଳଟାରେ ସାଇଆଡ଼େ କାହିଁକି ଯାଇଚି ?

ହୀରାବୋଉ : (ପ୍ରବେଶକରି) ଯୋଉ ଶାଢ଼ି ଗହଣା ଦେଇଚ ସେଇଆକୁ ନଯାଇ ପିନ୍ଧି ସାଇରେ ବୁଲିକି ଦେଖେଇବାକୁ ଯାଇଥିଲି ।

ଗୋବରା : ମୁଁ ନଦେଲେ କ'ଣ ହେଲା ? ତୋ ବାପଘରୁ ଯୋଉ ଶାଢ଼ି ଗହଣା ଆଣିଥିଲୁ ସେଇଆକୁ ପିନ୍ଧି ଯାଇଥିବୁ ।

ହୀରାବୋଉ : ମୁଁ କେତେଥର ତମକୁ କହିଲିଣି ମୋ ବାପଘର ନାଆଁ ନ ଧରିବାକୁ ?

ଗୋବରା : କାହିଁକି ତୋ ବାପଘର କ'ଣ ଇନ୍ଦ୍ର ନା ଚନ୍ଦ୍ର ? ନାଆଁଟା ଧରି ପକେଇଲେ ଖାଲି ମାନ ସନମାନ ତଳେ ପଡ଼ି ଗଡ଼ି ଯାଉଚି ।

ହୀରାବୋଉ : କାହିଁକି ମୋ ବାପ କ'ଣ ତମର ଅଜା ନା ନାତି ? ସବୁ କଥାରେ ମୋ ବାପଘରକୁ ତମେ କାହିଁକି ଏମିତି ଖୁଆସି କରିବ ?

ଗୋବରା : ହଉ, ତୋ ବାପା ରଜା, ଜମିଦାର । ଆଉ ତୁ ତାଙ୍କର ଗେଲବସର ଝିଅ । ତୁ କୁଆଡ଼େ ଯାଇଥିଲୁ କହିଲୁ ?

ହୀରାବୋହୂ : ଘରେ ଘିଅ ନାହିଁ ଦେଖୁକି ଗଲଟି ?
ଗୋବରା : ହଁ, କ'ଣ ହେଇଗଲା ସେଇଠୁ ?
ହୀରାବୋହୂ : ଗୁଆଳ ନପଠେଇ କୋଉ ପସନ୍ଦରେ ପୁଅ ହାତରେ ଶାଗୁଆଟି ପଠେଇ ଥିଲ ? ସାଇ ଗୋଟାଯାକ ବୁଲି ବୁଲି ଆଇଲି କେହି ଗୁଆଳ ମାଗେ ଦେଲେ ନେଇଁ ।
ଗୋବରା : ତରକାରି ହେଲଣି ?
ହୀରାବୋହୂ : ଘିଅତ ନାହିଁ, ତରକାରି କ'ଣ ହବ ?
ଗୋବରା : ଘିଅ ନାହିଁ ବୋଲି ତରକାରି ହବ ନେଇଁ ?
ହୀରାବୋହୂ : ତିନି ତିନିଟା ଛୁଆର ବାପ ହେଲଣି ଆଜିଯାଏ ତମର ଟକଳିଆ ପଣ ଗଲା ନେଇଁ ? ଘରେ ଘିଅ ନାହିଁ ତମେ ଗୁଆଳ ନଆଣି ଶାଗୁଆଟି ଅଣୁଚ । ତମ ମୁହଁକୁ ଟିକେ ନାକ ମାଡୁ ନେଇଁ ?
ଗୋବରା : ସମସ୍ତେ ଆଣିଲେ ମୁଁ ଆଣିଲି ।
ହୀରାବୋହୂ : ସମସ୍ତଙ୍କ ସାଙ୍ଗରେ ତମେ କ'ଣ ସମାନ ? ଗଲ ଦେଖୁବ ତୁମ ଘର ପରି ଆଉ କାହା ଘରେ ଘିଅ ନାହିଁ ।
ଗୋବରା : ଆଉ କାହା କଥାରୁ ଆମକୁ କ'ଣ ମିଳିବ ?
ହୀରାବୋହୂ : ଘିଅ ପେଇଁ ସିନା ତରକାରି ଦରକାର ।
ଗୋବରା : ତୁ ତାହାହେଲେ ତରକାରି କରିନଉଁ ? (ରାଗରେ)
ହୀରାବୋହୂ : କେମିତି କରି ଥାଆନ୍ତି ?
ଗୋବରା : ତରକାରି କେମିତି ହୁଏ, ତୁ ଅଜିଯାଏ ଜାଣିନଉଁ ?
ହୀରାବୋହୂ : ସବୁ ଜିନିଷ ଥିଲେ ସିନା ତରକାରୀ କରିଥାଆନ୍ତି ?
ଗୋବରା : ସବୁ ଜିନିଷ ଆଉ କ'ଣ ? କ'ଣ ନାହିଁ ?
ହୀରାବୋହୂ : ହଁ, ତମ ଅମିରି ଘରେ କ'ଣ ଅଭାବ ଅଛି ?
ଗୋବରା : ମୁଁ ଯାହା ପଗ୍ଚରୁଚି ସିଧା ଉତ୍ତର ଦେ ।
ହୀରାବୋହୂ : ଜିରା, ପୋସ୍ତ, ଗରମ ମସଲା କିଛି ନାହିଁ ।
ଗୋବରା : ଗରମ ମସଲ ନଦହଲେ କ'ଣ ତରକାରି ହେଇ ପାରିବ ନେଇଁ ?
ହୀରାବୋହୂ : ତରକାରି ହବ, ହେଲେ ଶାଗୁଆଟି ତରକାରି ହେଇପାରିବ ନେଇଁ । ନେଇଁ । କ'ଣ ନାଗିବ ଯେ ଗୁରା ?
ଗୋବରା : ଯାହା ନାଗିଥାଆନ୍ତା, ନାଗି ଥାଆନ୍ତା । ତୁ କଲୁ ନଉଁ କାହିଁକି ?

ହୀରାବୋଉ : ପିଆଜ, ରସୁଣ ବି ନାହିଁ ।
ଗୋବରା : ନଥାଉ ।
ହୀରାବୋଉ : ମତେ ଏମିତି ରାନ୍ଧି ଆସିବ ନେଇଁ ।
ଗୋବରା : ମାଉଁସ ତା ହେଲେ ରାନ୍ଧିନଉଁ ?
ହୀରାବୋଉ : ଆଉ କେଇଥର କଇବି ?
ଗୋବରା : କ'ଣ ହେଲା ସେ ଶାଗୁଆଡି ?
ହୀରାବୋଉ : କ'ଣ କଞ୍ଚା ଖାଇବ କି ?
ଗୋବରା : ଶାଗୁଆଡି କୋଉଠି ରଖିଲୁ ?
ହୀରାବୋଉ : ସେଇଠି, ସେଇ ଶିକାରେ ।
ଗୋବରା : ଏଁ ଶିକାରେ ? ଶିକାସାରା କ'ଣ ଢୋଗା ଢୋଗା ନାଲି ପିମ୍ପୁଡି ? ଆଉ କ,ଣ ଏଥିରେ ଗ୍ରେପାଟେ ଅଛି, ଶାଗୁଆଡି ଯେତିକି ତାର ବି ସେତିକି ପିମ୍ପୁଡ଼ି ।
ହୀରାବୋଉ : ଦେଖି' ଦେଖି । ସତେତ । ପିମ୍ପୁଡ଼ି କେମିତି ହେଲେ ?
ଗୋବରା : ଗାଆଁ ସାଇରେ ଯାଇ ଟହଲ ମାରିବୁ ତୁ କେମିତି ଜାଣିବୁ ?
ହୀରାବୋଉ : ତଳେ ପିମ୍ପୁଡ଼ି ଲଗିବ ବୋଲି ମୁଁ ହୀରାକୁ କଇଲି ଶିକାରେ ଥୋଇ ଦେବାକୁ । ମୁଁ କ'ଣ ଜାଣିଚି ସେଠିବି ପିମ୍ପୁଡ଼ି ହବ ବୋଲି ?
ଗୋବରା : ତୁ ବଦ୍‌ମାସ ସବୁ ଜାଣିଚୁ । ଜାଣି ଜାଣି ଶାଗୁଆଡିକୁ ପିମ୍ପୁଡ଼ି ଖୋଇଚୁ ।
ହୀରାବୋଉ : ମୋ ରଣ, ମୁଁ ସତ କହୁଚି, ମୁଁ ଜାଣିକି ପିମ୍ପୁଡ଼ି ଖୋଇ ନେଇଁ ।
ଗୋବରା : ଜାଣିକି ଖୋଇନଉଁ ନାଆଁ ? ମୁଁ ଛୁଆ ହେଇଚି ମତେ ଭୁଲେଇ ଦୋବୁ ? ଆଜି ତତେ ମୁଁ ଟିକି ଟିକି କରି ଖାଇବି ।
ହୀରାବୋଉ : ମୁଁ ତ ଠିଆ ହେଇଚି କେମିତି ଖାଉଚ ଖାଆ ।
ହୀରା : ବୋଉ । ତୁ ଏଠୁ ଗଲୁ । ବାପା ସକାଳୁ କିଛି ଖାଇ ନେଇଁ । ଭୋକରେ ପିଠିରେ ପେଟ ନାଗିଚି । ସିଏ ରାଗିଚି, ତୁ ପଳା ।
ହୀରାବୋଉ : ନାଆ ମତେ ଯଦି ସିଏ ମାରିବେ ମାରନ୍ତୁ । ମୁଁ ଏଠୁ ଉଠିବି ନେଇଁ ।
ହୀରା : ବାପା ! ଇଏ କ'ଣ ହଉଚି ବାପା । ଛାଡ଼ ସେ ବାଡ଼ିଟା । ବୋଉ ତୁ ପଳା ବୋଉ ।

ଗୋବରା : ତୁ ଏଠୁ ଯାଆ ହୀରା । ଛାଡ଼ ମତେ । ଆରେ ସେ ବାଡ଼ିଟା ଛାଡ଼ ।

ହୀରା : ବୋଉ ତୁ ପଳା । ବାପା ରାଗରେ ପାଗଳ ହେଇ ଗଲଣି । ତୁ ପଳା ।

ହୀରାବୋଉ : ତୁ ତାଙ୍କୁ ଛାଡ଼ିଦେ ହୀରା । ସିଏ ଯାହା କରିବାର କରନ୍ତୁ । ମୁଁ ମରିଗଲେ ତମ ସମସ୍ତଙ୍କ କଷ୍ଟାଳରୁ ବଞ୍ଚିଯିବି ।

ହୀରା : ତୋ ଗୋଡ଼ତଳେ ପଡୁଚି ବାପା, ତୁ ଏମିତି ହୋଉନା ।

ଗୋବର : ତୁ ଗଲୁ ଏଠୁ, ମୁଁ ତା ମଜା ବୁଝିବି ।

ହୀରାବୋଉ : ତୁ ତାଙ୍କୁ ଛାଡ଼ିଦେ ହୀରା । ମୁଁ ବଞ୍ଚିବାକୁ ଗ୍ଲହୁଁ ନେଇଁ ମୁଁ ମରିବି । ମୋତେ ସିଏ ମାରନ୍ତୁ ।

ହୀରା : ବାପା ! ସେ ପିଢ଼ାଟା ପୁଣି କ'ଣ ଧଇଲୁଣୁ ? ଛାଡ଼ ଛାଡ଼ ସେଟା ।

ଗୋବରା : ତୁ ଘୁଞ୍ଚୁ ହୀରା, ତୁ ଘୁଞ୍ଚୁ । ତାକୁ ଯଦି ମୁଁ ମାରିକି ନଖାଇଚି ସିଏ ମତେ ଚିହ୍ନିବ ନେଇଁ ।

ହୀରା : ବାପା ! ଇଏ କ'ଣ ହଉଚି ବାପା ? ବାପା !

ଗୋବରା : ଛାଡ଼ ମତେ । (ହୀରାବୋଉ ମୁଣ୍ଡକୁ ପିଢ଼ାରେ ପାହାରେ ପିଟିଲା)

ହୀରାବୋଉ : ଆଃ...... (ବଡ଼ ପାଟିରେ ଚିତ୍କାର) ମରିଗଲି । (ତଳେ ଅଚେତ ହୋଇ ପଡ଼ିଗଲା)

ହୀରା : ବାପା ଇଏ କ'ଣ କଲୁବାପା ? (କାନ୍ଦି କାନ୍ଦି) ବୋଉ ! ବୋଉ ! ବୋଉ ! ବୋଉଲୋ !

ଗୋବରା : ଯାଉ ମରିଯାଉ । ଏମିତିଆ ମାଇକେନା ରହିବା ଯାହା ମରିବା ସେଇଆ । ମୋ ଆଗରେ ଗଉଁ ଦେଖଉଚି ।

ହୀରା : (କାନ୍ଦୁଛି)

ଫକୀର : (ପ୍ରବେଶି) କ'ଣ ହେଲା ଗୋବରା଼ଇ କିଏ ମରିଗଲା ? ଆରେ ତୁ ଏମିତି କାଠ ହେଇକି ଠିଆ ହେଇଚୁ କାଇଁକି ?

ହୀରା : ହେ, ଭଗବାନ କେତେ ରକ୍ତ ? ମୁଁ କ'ଣ କରିବି ? ଫକୀର ଦାଦା, ମୋ ବୋଉ ! ମୋ ବୋଉ । (କାନ୍ଦିଲା)

ଫକୀର : ଚେତା ନାହିଁ ନା କ'ଣ ? ପାଣି ମଟେ ଆଣିଲୁ ହୀରା । ଯା ଚଞ୍ଚଳ ଆଣ ।

ହୀରା : ନିଅ ପାଣି ନିଅ । ବୋଉର ଆଖି ଦିଇଟା ଖୋସି ହେଇ ଗଲଣି । ହେ ମା ମଙ୍ଗଳା ସତେ କ'ଣ ମୋ ବୋଉ ଆଉ ଉଠିବ ?

ଫକୀର : ମୁହଁକୁ ଜୋର୍‌ରେ ପାଣି ଛାଟ ହୀରା । ଆରେ ଗୋବରଗଣେଶ ଏମିତି ଖୁଣ୍ଟ ପରି ଠିଆ ହେଇଚୁ କ'ଣ ?

ହୀରା : ସିଏ ପଶୁ ପାଲଟି ଯାଇଚି ଫକୀର ଦାଦା, ତାକୁ କିଛି କୁହନା ।

ଫକୀର : ତୋ ବୋଉର ମୁଣ୍ଡ କେମିତି ଫାଟିଲା ହୀରା ?

ହୀରା : ବାପା ପିଢାରେ ବାଡ଼େଇ ଦେଲା ।

ଫକୀର : ପିଢାରେ ବାଡେଇ ଦେଲା ? କାହିଁକି ?

ହୀରା : ବୋଉ ମାଉଁସ ତରକାରି କଲା ନେଇ ବୋଲି ।

ଫକୀର : ଗୋବରଗଣେଶ ! ତୁ ମଣିଷନା ପଶୁ ? ମାଉଁସ ପେଇଁ ନିଜ ସ୍ତ୍ରୀଟାକୁ ବାଡ଼େଇକି ମାରିଦେଲୁ ? ରହ ପୋଲିସ ଆସିବ ବାନ୍ଧିନବ । ଘଣା ପେଲୁଥିବୁ ମାଉଁସ ଖିଆ ମଜା ପାଉଥିବୁ ।

ହୀରା : ମୋ ବୋଉକୁ ବଞ୍ଚା ଫକୀର ଦାଦା । ମୋ ବୋଉକୁ କେମିତି ହେଲେ ବଞ୍ଚା ।

ଫକୀର : ତୁ ଧରିଲୁ ମୁଁ ତା କାନକୁ ଟିକେ ଫୁଙ୍କେ, କାଳେ ଚେତା ଫେରିବ । ଟିକେ ଧରୁ ନୋଉଁ ଗୋବରଗଣେଶ ଏମିତି ଭେଲେଭା ମିତିଆ ହୋଇଚୁ କ'ଣମ ?

ହୀରା : ମୁଁ ଧରୁଚି ତମେ ଫୁଙ୍କ ।

ଫକୀର : (ଫୁଙ୍କିବା ଶବ୍ଦ) ନା, ଏମିତି ହବ ନେଇଁ । ତୁ ଥାଆ ମୁଁ ଗୋଟେ ଗବନଙ୍କ ଆଣେ ।

ହୀରା : ତମେ ଯାଆନା ଫକୀର ଦାଦା । ମୋ ବୋଉକୁ କେମିତି ହେଲେ ବଞ୍ଚା ।

ଫକୀର : ତୁ ଥା । ମୁଁ ଏଇ ସାଙ୍ଗେ ସାଙ୍ଗେ ଆଉଚି (ପ୍ରସ୍ଥାନ)

ହୀରା : ଆଖି ଫିଟା ବୋଉ । ବୋଉଲୋ ! ଏ ବୋଉ ! ଏ ତୋର କ'ଣ ହେଲା ବୋଉ ? (କାନ୍ଦି ଉଠିଲା)



# ଶେଷ ଆଲୋକ

[ସମୟ ସକାଳ । ଗୋବରା ଘର । ହୀରା ବୋଉର ଚେତା ଫେରି ଆସିଛି । କିନ୍ତୁ ତାକୁ ଦୁର୍ବଳ ଲାଗୁଛି । ହୀରା ବୋଉ କାନ୍ଥକୁ ଡେରି ହୋଇ ବସିଛି ।]

ହୀରା : ତତେ କେମିତି ନାଗୁଚି ବୋଉ ?

ହୀରା ବୋଉ : କଥା କହିବାକୁ ବଳ ପାଉ ନେଇଁ । ମୁଣ୍ଡ ବୁଲେଇ ଦଉଚି ।

ହୀରା : ରକତ କ'ଣ ଗଛମିତି ଯାଇଚି । ଏକାବେଳେକେ ବେଶ୍ ଏ ରକତ ଯାଇଚି । ସେତିକି ରକତ ହବାକୁ ଆଉରି ବରଷେ ନାଗିବ ।

ଚନ୍ଦରା : [ବାହାରୁ ଆସିଛି] ବୋଉ ! ଏ ବୋଉ !

ହୀରା ବୋଉ : ଉଁ

ଚନ୍ଦରା : ମତେ ଭୋକ ହେଲାଣି । କ'ଣ ଖାଇବି ଦେ ।

ହୀରା ବୋଉ : ମରି ଯାଇଥିଲେ ତରି ଯାଇ ଥାଆନ୍ତି । ହଟିଆ ଯମ ମତେ ବଞ୍ଚେଇ ରଖିଚି ହଟହଟା କରିବାକୁ ।

ଚନ୍ଦରା : ମୁଁ କାଲି ଠଉଁ ଖାଇ ନେଇଁ । ମତେ ଭାରି ଭୋକ ହେଲାଣି ।

ହୀରା : କିଏ ଖାଇଛ କି ତୁ ଖାଇଲୁ ନଉଁ ? ଦେଖୁଚୁ କ'ଣ କଉଚୁ କ'ଣ ? ଗୁଉଳ ନାହିଁ ବୋଲିତ ଏତେ କଥା । କାଲିଠୁ ପା ରନ୍ଧା ହେଇ ନେଇଁ ।

ହୀରା ବୋଉ : ସିଏ ଛୁଆଟା ଏତେ କଥା କ'ଣ ବୁଝିବ ? ଦେଖିଲୁ ସେ ଘେଷେଇ ଘର ଠଣାରେ ଦଶ ପଇସିଟାଏ ପଡ଼ିଥିଲା ।

ଚନ୍ଦରା : ଜମା ଦଶଟା ପଇସା ? ମୁଁ ନେବି ନେଇଁ ।

ହୀରା ବୋଉ : ଆଉ କିଛି ନାହିଁ । ମୋ ସୁନା ପୁଅଟା, ଦଶ ପଇସାରେ ମୁଢ଼ି ଖାଇ ଦେଇ ପାଣି ପିଇଦବୁ ।

ଚନ୍ଦରା : ନାଇଁ, ମତେ ଆଉ ଦଶ ପଇସା ଦେ । ସେତିକିରେ ମୋ ପେଟ ପୂରିବ ନେଇଁ ।

ହୀରା : ବୋଉ ଦିହ ପରା ଭଲ ନାହିଁ । ମଦନା ଯାଉଛି ଫକୀର ଦାଦା ଘରକୁ । ଗ୍ଲୁକୋଜ ଆଣିବ । ସିଏ ଆସୁ ଭାତ ରାନ୍ଧିଦେବି ଖାଇବୁ । ମୋ ସୁନା ଭଉଣୀ ପରା, ଯା ଏଇନେ ମୁଡ଼ି ଖାଇ ଦେଇଥା ।

ଚନ୍ଦରା : ମୁଁ ଯାଉଚି । ଚଞ୍ଚଳ ଭାତ ରାନ୍ଧିବୁ । (ଚନ୍ଦରା ଡେଇଁ ଡେଇଁ ବାହାରକୁ ଚାଲି ଗଲା)

ହୀରା ବୋଉ : ହୀରା ! ତୋ ବାପା କୁଆଡ଼େ ଗଲେ ? କାଲିଠୁଁ ତ ତାଙ୍କୁ ଦେଖୁ ନେଇଁ ।

ହୀରା : କେଇ ଜାଣି କୁଆଡ଼େ ଗଲେ ? ମୁଁ ବି କାଲିଠୁଁ ତାଙ୍କୁ ଦେଖି ନେଇଁ । ତୋର କାଲି ଯେତେବେଳେ ଚେତା ବୁଡ଼ି ଯାଇଥିଲା ସେତିକି ବେଳେ ବାପା କଳା କାଠ ପଡ଼ିକି ସେଇଠି ଖୁଣ୍ଟପରି ଠିଆ ହେଇଥିଲା ।

ହୀରା ବୋଉ : କଳା କାଠ ପଡ଼ିଯାଇଥିଲେ ?

ହୀରା : ହଁ ବୋଉ ! ସେତେବେଳେ ବାପା ଏମିତି ଦିଶୁଥିଲା ଯେମିତି ତା ଦିହରେ ରକତ ବୋଲି ଟୋପେ ନାହିଁ ।

ହୀରାବୋଉ : କୁଆଡ଼େ ଗଲେ ସିଏ ?

ହୀରା : ତୋ ଚେତା ଫେରିଲା ପରେ କବିରାଜ କହିଲା ଗରମ ଦୁଧ ପିଇବାକୁ ଦିଅ । ସେତେବେଳେ ସମସ୍ତେ ବାପାକୁ ଖୋଜିଲେ । ବାପା ସେତେ ବେଳକୁ ସେଠି ନଥିଲା । ତା ଆଗରୁ କୁଆଡେ ପଳେଇ ଥିଲା ।

ହୀରା ବୋଉ : ମୋ ଉପରେ ରାଗିକି ·ତୋ ବାପା କୁଆଡେ ପଳେଇଚନ୍ତି । ଫକୀର ଦାଦାଙ୍କୁ କହ ସିଏ ଟିକେ ତୋ ବାପାକୁ ଖୋଜନ୍ତୁ ।

ହୀରା : ତୁ ବେସ୍ତ ହୋନା ବୋଉ ! ବାପାକୁ ସମସ୍ତେ ଗାଳିଦେଲେ ବୋଲି ସିଏ କୁଆଡ଼େ ପଳେଇଛି । ରାଗ ଥଣ୍ଡା ପଡ଼ିଗଲେ, ବଳେ ସିଏ ନୋଉଟି ଆସିବ ନେଇଁ ?

ହୀରା ବୋଉ : ନାଇଁ ମାଆ । ସିଏ ଭରି ରାଗି ଲୋକ । ତାଙ୍କୁ ଖୋଜ ମାଆ । ଫକୀର ଦାଦାଙ୍କୁ କହ ।

ହୀରା : ମୁଁ କ'ଣ ସେ କଥା ବାକି ରଖିଚି ? ଆମ ଗାଆଁ ସାଇ, ଗୋଇ-ଘର, ତୋଟାତଳ, ସବୁଠି ଖୋଜା ସରଇଲାଣି ।

ହୀରା ବୋଉ : ଆଉ କୁଆଡେ଼ ଗଲେ ?

ହୀରା : ଯୁଆଡେ଼ ଯାଇଥିବେ ବଳେ ଫେରି ଆସିବେ । ତୁ ଜମା ବେସ୍ତ ହୋନା ।

ଚନ୍ଦରା : (ପ୍ରବେଶ) ବୋଉ ! ଏ ବୋଉ !

ହୀରା : ବୋଉ ଦିହପା ଭଲ ନାହିଁ, ଏମିତି ବୋଉ ବୋଉ କାହିଁକି ହଉଚୁ ?

ହୀରା ବୋଉ : କିରେ ଚନ୍ଦର ! ପୁଣି କ'ଣ ହେଲା ?

ଚନ୍ଦରା : ମୋ ପେଣ୍ଡୁ ଦେ ।

ହୀରା : ତୋ ପେଣ୍ଡୁକୁ କିଏ କ'ଣ କାନିରେ ବାନ୍ଧିଚି ନା ଅଣ୍ଟାରେ ଖୋସିଚି ?

ଚନ୍ଦରା : ମୁଁ ପାଉ ନେଇଁ ।

ହୀରା : ତୁ ଖେଳିକି ଏଠି ସେଠି ପକେଇବୁ, ତୁ ପାଇବୁ ନଇଁ ଆଉ କିଏ ପାଇବ ? କୋଉଠି ପକେଇ ଥିବୁ, ଯା ଭଲକି ଖୋଜ ।

ହୀରା ବୋଉ : ଛୁଆଟା ସାଙ୍ଗରେ କାହିଁକି କଟର କଟର ନଗେଇଚୁ ? ଯା ତା ପେଣ୍ଡୁଟା କୋଉଠି ଅଛି ଖୋଜି ଦେ ।

ହୀରା : (ଚନ୍ଦର ପ୍ରତି) ଏ ଘରଟା ଭଲକି ଖୋଜିଲୁଣି ?

ଚନ୍ଦରା : ଏ ଘରେ ନାହିଁ ।

ହୀରା : ଓଳି ତଳ ଦେଖିଚୁ ?

ଚନ୍ଦରା : ନାଇଁ, ସେଠି ନାହିଁ ।

ହୀରା : ଆରେ ଘରଟା ଖୋଜିଚୁ ?

ଚନ୍ଦରା : ନାଇଁ, ସେ ଘରଟା ଫିଟୁ ନେଇଁ ।

ହୀରା : ଫିଟୁ ନେଇଁ ? ଭଣ୍ଡିର ଫିଟେଇ ଦଉନଇଁ ?

ଚନ୍ଦରା : ଭଞ୍ଜିର କ'ଣ ଦିଆ ହେଇଚି କି ?

ହୀରା : ଆଉ ଖୋଲୁ ନେଇଁ କାଇଁକି ?

ଚନ୍ଦରା : କେଇ ଜାଣି ? ତୁ ଆସୁନଇଁ ଦେଖିବୁ ।

ହୀରା : ଚାଲ ଦେଖିବା ।

ଚନ୍ଦରା : ଆସ । (ଦୁହେଁ ଆରଘର କବାଟ ପାଖରେ ଠିଆ ହେଲେ ।) ହଁ, ପେଲୁ ନଇଁ (ନିଜେ କବାଟକୁ ପେଲିଲା) କାଇଁ ଫିଟୁ ନେଇଁ ।

ହୀରା : (ନିଜେ କବାଟ ଠେଲିଲା) ସତେ ତ । ଭିତରେ କିଏ ଅଛି ନା କ'ଣ ?

ଚନ୍ଦରା : କେଇଜାଣି ।

ହୀରା : (ନଇଁ କରି କବାଟ ତଳକୁ ଗ୍ରହିଁଲା) ଭିତର ପଟରୁ ଗୋଟେ ପିଢ଼ା ଡିରା ଦିଆ ଯାଇଚିନା କ'ଣ । ରହ ମୁଁ ଦେଖେ । (କବାଟ ତଳକୁ ହାତ ଗଳାଇଲା ।)

ଚନ୍ଦରା : ହଁ, ମୁଁ କବାଟଟା ଭିଡ଼ିକି ଧରୁଚି ତୁ ପିଢ଼ାଟା କାଢି ଆଣ ।

ହୀରା : ଉଁ ଉଁ... ହୁଁ ରହ । ହଁ ଆଉ ଟିକେ ଭିଡ଼ି ଧଅ । (ହାତ ଭିତରେ ହାତ ଗଳାଇ ପିଢାଟା ବାହାର କରି ଆଣିଲା ।) ଇଲେ ମୋ ବୋଉ ଲେ ! କିଏ ଗୋଟେ ଓହୋଳିଚି ।

ଚନ୍ଦରା : କାହିଁ କୋଉଠି ?

ହୀରା : ହେଇ ଦେଖୁ ନଇଁ । ଘର ଓଗରୁ କିଏ ଜଣେ ଓହଳିଚି ।

ଚନ୍ଦରା : ଏଟା କିଏ ଓହଳିଚି ?

ହୀରା : ବୋଉକୁ ଡାକ ଚନ୍ଦରା । ବାପା ଓହଳିଚି । (କାନ୍ଦି ପକାଇଲା)

ଚନ୍ଦରା : (ଭୟ ଓ କାନ୍ଦ ମିଶା ସ୍ୱରରେ) ବାପା ! ବାପା କାଇଁକି ସେମିତି ଓହଳିଚି ?

ହୀରା : ମୋ ଦିହ ହାତ ଥରୁଚି । ବୋଉକୁ ଡାକ ।

ଚନ୍ଦରା : ବୋଉ ! ଏ ବୋଉ !

ହୀରା : ବାପା ଦିହ ହାତ ଫୁଲି ଯାଇଚି । ଚିହ୍ନି ହଉ ନେଇଁ । ବୋଉ ! ଏ ବୋଉ ! (କାନ୍ଦି ପକାଇଲା)

ହୀରା ବୋଉ : କ'ଣ ହେଲା କିଲେ ହୀରା ?

ହୀରା : ବାପା ଦଉଡ଼ି ଦେଇ ଦେଇଚି ।

ହୀରା ବୋଉ : କ'ଣ କଇଲୁ ? ତୋ ବାପା ଦୋଉଡ଼ି ଦେଇଚନ୍ତି ? କାଇଁ ? କୋଉଠି ?

ହୀରା : ହେଇ ଏଇଠି । ଆମର ସବୁ ସରିଗଲା ବୋଉ, ସବୁ ସରିଗଲା ।

ହୀରା ବୋଉ : ଇ'ଏ ତମେ କ'ଣ କଲ ? ମୋ ଘର ବୁଡ଼ିଗଲା । (ଉଠି ଆସିବାକୁ ଚେଷ୍ଟା କରି ସେଇଠି ଗଛ କାଟିବା ପରି ପଡ଼ିଲା ।)

ହୀରା/ଚନ୍ଦରା : ବୋଉ ! ତୋର କ'ଣ ହେଲା ? ବୋଉ...ବୋଉ !

ହୀରା : (କାନ୍ଦି କାନ୍ଦି) ଚନ୍ଦରା ପାଣି ମଗେ ଆଣ । ବୋଉର ଚେତା ବୁଡ଼ିଗଲା । ବୋଉ ! ବୋଉ ! ଆଖି ଖୋଲ ବୋଉ ! ବୋଉ ! ଏ ବୋଉ ! (ଚନ୍ଦରା ପାଣି ପାଇଁ ଚାଲିଗଲା । ଏଇ ସମୟରେ ଆସିଛି ପରେଶ ।]

ପରେଶ : ହୀରା କ'ଣ ହେଲା କାହିଁକି କାନ୍ଦୁଚୁ ?

ହୀରା : ଆମର ସବୁ ସରିଗଲା ପରେଶ ଭାଇ ! ବାପା ଦଉଡ଼ି ନଗେଇ ଦେଇଚି । ବୋଉ ବାପାକୁ ଦେଖି ଚେତା ବୁଡ଼ି ଯାଇଚି ।

ଚନ୍ଦରା : (ପାଣି ଧରି ଫେରିଛି) ଦେଇ ପାଣି ନେ । ବୋଉ ଏ ବୋଉ !

ହୀରା : (ହୀରା ତା' ବୋଉ ମୁହଁରେ ପାଣି ମାରିଲା) ବୋଉ ! ଏ ବୋଉ !

ପରେଶ : ତୋ ବୋଉଙ୍କ ମୁହଁରେ ପାଣି ଛାଟିଦେ ।

ହୀରା : (ପାଣି ଛାଟିଲା) ବୋଉ ! ଏ ବୋଉ ! ଆଖି ଖୋଲ ବୋଉ ! ଏ ବୋଉ ! (ଭୟ ପାଇ ଯାଇ) ପରେଶ ଭାଇ ! ବୋଉର ଦେହ ହାତ କ'ଣ ହେମାଳ ହେଇ ଗଲାଣି ? ମୁହଁଟା କଳା ପଡ଼ି ଗଲାଣି । ତା କାନକୁ ଟିକେ ଫୁଙ୍କ ପରେଶ ଭାଇ !

ପରେଶ : ତୁ ଟିକେ ବେକଟାକୁ ଟେକି ଧର । (ହୀରା ତା ବୋଉର ମୁଣ୍ଡକୁ ତା କୋଳରେ ଥୋଇଲା । ପରେଶ ହୀରାବୋଉର କାନରେ ମୁହଁ ଲଗାଇ ଫୁଙ୍କିଲା ।)

ହୀରା : ପରେଶ ଭାଇ ! ମୋ ବୋଉ କ'ଣ ଆଉ ଉଠିବ ନେଇଁ ?

ପରେଶ : ନାଁ ହୀରା, ତୋ ବୋଉ ଆଉ ନାହିଁ ।

ହୀରା : (କାନ୍ଦି ଉଠିଲା) ବୋଉ ! ବୋଉ !

ଚନ୍ଦରା : (କାନ୍ଦି ଉଠିଲା) ବୋଉ ! ଏ ବୋଉ !

ହୀରା : ମୁଁ କ'ଣ କରିବି ପରେଶ ଭାଇ ?

ଚନ୍ଦରା : ପରେଶ ଭାଇ ! ମୋ ବାପାକୁ ଓଗଳୁ ଫିଟେଇ ଦିଅ । ମୋ ବୋଉକୁ ଟିକେ ଫୁଙ୍କ ପରେଶ ଭାଇ ! ସିଏ ଉଠିବ ।

ହୀରା : ଆଉ କେହି ଉଠିବେ ନାହିଁରେ ଚନ୍ଦରା ! (କାନ୍ଦିଲା)

ଚନ୍ଦରା : ନାଇଁ ମୁଁ ଯାଉଛି ଫକୀର ଦାଦାକୁ ଡାକିବି । ସିଏ ଫୁଙ୍କିଲେ ମୋ ବୋଉ ଉଠିବ । (ଚନ୍ଦରର ପ୍ରସ୍ଥାନ)

ହୀରା : ଇଏ କ'ଣ ହେଇ ଗଲ ପରେଶ ଭଇ !

ପରେଶ : ତୋ ବାପା, ବୋଉ ଜୀବନ ଯୁଦ୍ଧରେ ସହିଦ ହୋଇ ଯାଇଚନ୍ତି ।

ହୀରା : ପରେଶ ଭଇ !

ପରେଶ : ଆମର ସବୁଠୁ ବଡ଼ ଶତ୍ରୁ ଦାରିଦ୍ର୍ୟ । ଏ କଥା ଆମେ ନ ବୁଝିପାରି ସବୁ କାମରେ ପରସ୍ପରକୁ ଦୋଷ ଦେଉଛେ । ଦାରିଦ୍ର୍ୟ ବିରୁଦ୍ଧରେ ଯୁଦ୍ଧ ନ କରି ପରସ୍ପର ବିରୁଦ୍ଧରେ ଲଢୁଛେ । କେବଳ ତୋ ବାପା, ବୋଉ ନୁହଁ ଆମ ସମାଜର ସବୁ ଗରିବ ଲୋକେ ଏମିତି ପ୍ରକୃତ ଶତ୍ରୁକୁ ଛାଡ଼ି ପରସ୍ପରକୁ ଦୋଷ ଦେଉଚନ୍ତି । ନିଜ ନିଜ ଭିତରେ ଲଢ଼ା ଲଢି ହେଉଛନ୍ତି । ଏମିତି ଗୋଟେ ଭୁଲ ଯୁଦ୍ଧରେ ତୋ ବାପା ବୋଉ ମୁହାଁ ମୁହିଁ ହୋଇ ଜୀବନ ଦେଲେ ।

ହୀରା : ମୁଁ ଏବେ କ'ଣ କରିବି ପରେଶ ଭଇ ?

ପରେଶ : ତୁ ମନକୁ ଦମ୍ଭ କର ହୀରା ! ମୁଁ ତୋ ପାଖେ ପାଖେ ଅଛି ।

ହୀରା : ପରେଶ ଭଇ !

ପରେଶ : ତୋ ବାପା ବୋଉଙ୍କ ଶବକୁ ଛୁଇଁ ଆମେ ଶପଥ ନେବା ! ଆଜିଠୁ ଆମେ ନିଜ ନିଜ ଭିତରେ ନ ଲଢି ଦାରିଦ୍ର୍ୟତା ବିରୁଦ୍ଧରେ ଲଢିବା ।

ହୀରା : ଆମେ କ'ଣ ପାରିବା ?

ପରେଶ : କେବଳ ଆମେ ନୁହଁ ହୀରା ! ଏ ଯୁଦ୍ଧରେ ଆମ ସହିତ ଯୋଗ ଦେବେ ଆହୁରି ଅନେକ । ଅଭାବ, ଅନାଟନ, ଦୁଃଖ, ଦୁର୍ଦ୍ଦଶାର ରାତି ନିଶ୍ଚୟ ପାହିବ । ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଆମକୁ ସଂଗ୍ରାମ ଚଲୁ ରଖିବାକୁ ହେବ । [ହୀରା ଓ ପରେଶ ଫ୍ରିଜ ହୋଇ ଠିଆହୋଇ ରହିଲେ । ଧୀରେ ଧୀରେ ମଞ୍ଚ ଅନ୍ଧକାର ହେଇ ।]

●

# ଅଚାହ୍ନା ଅପରାଧ

( ସାମାଜିକ ନାଟକ )

* ଏହି ନାଟକ ଆକାଶବାଣୀ, କଟକ (ସି.ବି.ଏସ.) ଦ୍ୱାରା ପ୍ରଯୋଜିତ ହୋଇ ୧୯୯୧ ମସିହା ସର୍ବ ଭାରତୀୟ ବେତାର ନାଟକ ପ୍ରତିଯୋଗିତାକୁ ପଠା ଯାଇଥିଲା ।

* ଏହି ନାଟକ ପାଇଁ ଗୋଟିଏ ମାତ୍ର ସେଟ୍ ଆବଶ୍ୟକ ହେବ । ନାଟକ ପାଇଁ ଯମରାଜାଙ୍କ ଦରବାର ଓ ଦେବରାଜଙ୍କ ଦରବାର, ଏହିପରି ଦୁଇଟି ଦରବାର ଆବଶ୍ୟକ ଥିଲେ ମଧ୍ୟ ଗୋଟିଏ ସେଟ୍ ପ୍ରସ୍ତୁତ କରି ଯରକାର ପରଦା, ଦରକାରୀ ଆସବାବ ପତ୍ର ବଦଳାଇ ଦୁଇଟି ଅଲଗା ଅଲଗା ଦରବାରର ଧାରଣା ସୃଷ୍ଟି କରି ହେବ ।

* ଏ ନାଟକରେ ଆଦୌ ନାରୀ ଚରିତ୍ର ନାହିଁ ।

* ନାଟକଟିର ଅଭିନୟ ସମୟ ୪୫ ମିନିଟ୍ ।

୧୯୯୧ ମସିହା ସର୍ବ ଭାରତୀୟ ବେତାର ନାଟକ ପ୍ରତିଯୋଗିତା ପାଇଁ ଆକାଶବାଣୀ, କଟକ (ସି.ବି.ଏସ)ଙ୍କ ଦ୍ୱାରା ପ୍ରସ୍ତୁତ ନାଟକର ବିଭିନ୍ନ ଚରିତ୍ର :

* ଯମରାଜ – ବିନାୟକ ମିଶ୍ର
* ଦେବରାଜ – ରବିନାରାୟଣ ମିଶ୍ର
* ଚିତ୍ରଗୁପ୍ତ – ଗୋଲକ ଚନ୍ଦ୍ର ମହାନ୍ତି
* ଅନନ୍ତ – ଅନନ୍ତ କୁମାର ଦାସ
* ଯମଦୂତ – ସରୋଜ କୁମାର ବେହେରା

---

ପରିଚାଳନା – ଗୋପବନ୍ଧୁ ଚୌଧୁରୀ

# ଅଚିହ୍ନା ଅପରାଧ

[ସିଂହାସନ ଉପରେ ଯମରାଜ ବସିଛନ୍ତି । ତାଙ୍କ ପାଖକୁ ଆଉ ଗୋଟିଏ ଚେୟାରରେ ବସିଛନ୍ତି ମନ୍ତ୍ରୀ ଚିତ୍ରଗୁପ୍ତ । ତାଙ୍କ ହାତରେ ଅଛି ଗୋଟିଏ ପାଞ୍ଜି । ଦ୍ୱାର ଦେଶରେ ଦୁଇଜଣ ଯମଦୂତ ଦଣ୍ଡାୟମାନ ।]

ଯମରାଜ : ଚିତ୍ରଗୁପ୍ତ । ମୁଁ ଜାଣିବାକୁ ଚାହେଁ ମର୍ତ୍ତ୍ୟରୁ ଧରାହୋଇ ଆସୁଥିବା ମଣିଷମାନେ ଧରାହୋଇ ଆସିବାର କେଇ ଦିନ ପରେ ସେମାନଙ୍କୁ ମୋ ଦରବାରରେ ପେଶ୍ କରାଯାଉଛି ?

ଚିତ୍ରଗୁପ୍ତ : ଏଇ...ମାନେ...ନାଇଁ... (ଥତମତ ହୋଇ) ଠିକ୍ ସମୟରେ ଆଜ୍ଞା ପେଶ୍ କରା ଯାଉଛି ।

ଯମରାଜ : ତୁମେ ଯେମିତି ଥତମତ ହେଉଛ ସେଥିରୁ ଜଣା ଯାଉଛି ତମେ କିଛି ଲୁଚେଇବାକୁ ଚେଷ୍ଟା କରୁଛ । ଅର୍ଥାତ ତୁମେ ମିଛ କହୁଛ ।

ଚିତ୍ରଗୁପ୍ତ : ନାଇଁ ଆଜ୍ଞା, ମିଛ ନୁହେଁ ସତ କହୁଛି । ଠିକ୍ ସମୟରେ ବିଚାର ପାଇଁ ପେଶ୍ କରୁଛି ।

ଯମରାଜ : ଠିକ୍ ସମୟରେ ମାନେ କ'ଣ ? ଯେଉଁଦିନ ଧରା ହୋଇ ଯିଏ ଆସୁଛି ତାର ବିଚାର ଠିକ୍ ସେଇଦିନ ହେଉଛି ?

ଚିତ୍ରଗୁପ୍ତ : ହେଉଥିଲା । ଠିକ ସେଇଦିନ ହେଉଥିଲା ।

ଯମରାଜ : ହେଉଥିଲା ମାନେ ଆଉ ଠିକ୍ ସେଇଦିନ ବିଚାର ହେଉନାହିଁ । ସେ ମଣିଷଟା ତା ହେଲେ ଠିକ୍ କଥା କହୁଥିଲା ?

ଚିତ୍ରଗୁପ୍ତ : କିଏ ଆଜ୍ଞା ? କିଏ ଆପଣଙ୍କୁ କ'ଣ କହୁଥିଲା ?

ଯମରାଜ : ଦୂତ ସେ ଅନନ୍ତକୁ ହାଜର କରାଅ ।

ଚିତ୍ରଗୁପ୍ତ : କାହାର ଏତେ ଦୂର ସାହସ ହେଲା ? କିଏ ଆପଣଙ୍କୁ ଆସି ଦେଖା କରି.........

ଯମଦୂତ : (ଗୋଟିଏ ଲୋକକୁ ବାନ୍ଧିଆଣି ହାଜର କରାଇଲା) ! ମହାରାଜ ଏଇ ସେଇ ମଣିଷ ।

ଯମରାଜ : ତା ହାତର ବନ୍ଧନ ଖୋଲିଦିଅ ଦୂତ ।

ଯମଦୂତ : ଯେ ଆଜ୍ଞା ହଜୁର (ବନ୍ଧନ ଖୋଲି ଦେଲା)

ଚିତ୍ରଗୁପ୍ତ : ଏ ଲୋକଟା ହାଜତରୁ ଖସି ଚାଲି ଆସିଛି ମଣିମା ! ଏ ଲୋକ ମୋଟେ ପାଞ୍ଚଦିନ ହେଲା ମର୍ତ୍ତ୍ୟରୁ ଆସିଛି । ଏହାର ବିଚାର ପାଇଁ ସମୟ ହୋଇନାହିଁ ।

ଅନନ୍ତ : ପାଞ୍ଚଦିନ ହେଲା ଅନ୍ଧାରୁଆ ହାଜତଟାରେ ଖିଦିଖାଦି ହୋଇ ରହି ରହି ଅଣନିଃଶ୍ୱାସୀ ହୋଇ ଗଲଣି ମଣିଷ ।

ଯମରାଜ : ଚିତ୍ରଗୁପ୍ତ! ମଣିଷମାନଙ୍କୁ କେତେ ଦିନ ହାଜତରେ ରଖିବା ପରେ ତମେ ଦରବାରରେ ପେଶ୍ କରୁଛ ?

ଚିତ୍ରଗୁପ୍ତ : ତାର କିଛି ଠିକ୍ ଠିକଣା ନାହିଁ ଆଜ୍ଞା ।

ଯମରାଜ : ମାନେ ଯମରାଜ୍ୟରେ ବି ଅନ୍ୟାୟ ?

ଚିତ୍ରଗୁପ୍ତ : ଅନ୍ୟାୟ କ'ଣ ଆଜ୍ଞା ?

ଯମରାଜ : ବିନା ବିଚାରରେ ଦଣ୍ଡଦେବା ଘୋର ଅନ୍ୟାୟ ।

ଚିତ୍ରଗୁପ୍ତ : ଦଣ୍ଡ ଦିଆଯାଇ ନାହିଁ ଆଜ୍ଞା । ହାଜତରେ ରଖା ଯାଇଛି ।

ଯମରାଜ : ଅନ୍ଧାରୁଆ ଘର ଭିତରେ ଖିଦି ଖାଦି ଅଟକାଇ ରଖିବାଟା ଦଣ୍ଡ ନୁହଁ ବୋଲି ତୁମେ କହୁଛ କେମିତି ? ପୁଣି ଘଣ୍ଟେ ଦି' ଘଣ୍ଟା ନୁହେଁ, ପାଞ୍ଚ ଦିନ ।

ଅନନ୍ତ : ଆମ ମର୍ତ୍ତ୍ୟପୁରରେ କାହାକୁ ବିନା ବିଚାରରେ ୨୪ ଘଣ୍ଟାରୁ ଅଧିକ ସମୟ ଅଟକାଇ ରଖିବା ଆଇନ୍ ଆଖିରେ ଅପରାଧ ।

ଯମରାଜ : ଏଠିବି ସେଇ ନିୟମ ଅଛି ।

ଚିତ୍ରଗୁପ୍ତ : ଖାଲିତ ନିୟମକୁ ଦେଖିଲେ ହେବନାହିଁ ? ପରିସ୍ଥିତି ବି ଦେଖିବାକୁ ପଡ଼ିବ ।

ଯମରାଜ : ତୁମେ ନିୟମ ଅନୁସାରେ କାମ କର । ପରିସ୍ଥିତି ଦେଖିବା ଦରକାର ନାହିଁ ।

ଚିତ୍ରଗୁପ୍ତ : ଖାଲିତ ବିଚାର କରି ଦେଲେ ହେବ ନାହିଁ ? ବିଚାର ପରେ ଯାହାଙ୍କୁ ଯେମିତି ଦଣ୍ଡ ଦିଆଯିବ ତାର ବ୍ୟବସ୍ଥା କରାଯିବା କଥା ।

ଯମରାଜ : ଦଣ୍ଡ ଦେବାରେ ଅସୁବିଧା କ'ଣ ଅଛି ?

ଚିତ୍ରଗୁପ୍ତ : ଅଛି ଆଜ୍ଞା !

ଯମରାଜ : କି ଅସୁବିଧା ଅଛି ?

ଚିତ୍ରଗୁପ୍ତ : ମର୍ତ୍ତ୍ୟର ଲୋକ ସଂଖ୍ୟା ହୁ ହୁ ହୋଇ ବଢି ଚାଲିଛି । ସେଇ ହାରରେ ମୃତ୍ୟୁ ସଂଖ୍ୟାବି ବଢି ଚାଲିଛି । ଏତେ ଲୋକଙ୍କର ବିଚାର ସାଙ୍ଗେ ସାଙ୍ଗେ କରିବା ସମ୍ଭବ ନୁହେଁ ।

ଯମରାଜ : ଏତେ ଲୋକ, ସେତେ ଲୋକରୁ କ'ଣ ପାଇବ ? ସାଙ୍ଗେ ସାଙ୍ଗେ ତୁମେ ଦରବାରରେ ପେଶ୍ କର, ମୁଁ ବିଚାର କରିବି ? ଆଜିର କାମ କାଲିକି ରଖିବାକୁ ମତେ ମୋଟେ ଭଲ ଲାଗେ ନାହିଁ । ତା ଛଡ଼ା ଏସବୁ ମୋ ନୀତି ବିରୁଦ୍ଧ ।

ଚିତ୍ରଗୁପ୍ତ : ଖାଲି ବିଚାର କରି ଦେଲେ କ'ଣ ହେବ ଆଜ୍ଞା ? ସେମାନଙ୍କ ଦଣ୍ଡ ବ୍ୟବସ୍ଥା କରିବା ସମ୍ଭବ ନୁହେଁ ।

ଯମରାଜ : ତୁମେତ ଆଶ୍ଚର୍ଯ୍ୟ କଥା କହୁଛ । ଅସମ୍ଭବ କ'ଣ ?

ଚିତ୍ରଗୁପ୍ତ : ଆପଣ ନିଜେ ଦେଖିଲେ ସବୁ ବୁଝି ପାରିବେ । ଗରମ ତେଲ କଡ଼େଇରେ ଆମେ ପ୍ରଥମେ ଗୋଟେ ଲେଖାଁ ଲୋକ ପକାଉଥିଲୁ । ଏବେ କିନ୍ତୁ ଗୋଟେ କଡ଼େଇରେ ଚାରି ଚାରିଟା ଲୋକ ଏକାବେଳକେ ପକାଉଛୁ । ସେମିତି ଗୋଟେ ଗୋଟେ ଡାଳରେ ଦଶ/ବାରଟା ଲୋକଙ୍କ ଗଳାରେ ରସି ଲଗାଇ ଟାଙ୍ଗିଛୁ । ନରକ କୁଣ୍ଡରେତ ଆଉ ତିଳାର୍ଦ୍ଧ ସ୍ଥାନ ନାହିଁ । ପ୍ରତିଦିନ ଏତେ ଅଧିକ ଲୋକଙ୍କୁ କେମିତି ଦଣ୍ଡ ଦିଆଯିବ ଆଜ୍ଞା ?

ଯମରାଜ : ପଙ୍କ ପୋଖରୀ, ଶିମୁଳି ଗଛ, ଆଉ କରତ ଚିରା ?

ଚିତ୍ରଗୁପ୍ତ : ସବୁଠି ଭିଡ଼ ଆଜ୍ଞା ! ପଙ୍କ ପୋଖରୀମାନଙ୍କରେ ଗୋଟାକ ଉପରେ ଆଉ ଗୋଟାକୁ ନେଇ ଯମଦୂତମାନେ ମାଡୁଛନ୍ତି । ଗୋଟେ ଗୋଟେ ଶିମୁଳି ଗଛରେ ମୂଳରୁ ତାଳ ପର୍ଯ୍ୟନ୍ତ କେଉଁଠି ହେଲେ ସ୍ଥାନ ନାହିଁ ।

କରତ ଚିଉଡ଼ିମାନଙ୍କ ଅବସ୍ଥାତ ସବୁଠୁ ସାଙ୍ଘାତିକ । ସେମାନଙ୍କୁ ଦିନରାତି ସମୟ ଅଣ୍ଟୁନାହିଁ । ସିଫ୍ଟ ତିନିଟି କରା ଯାଇଛି । ତଥାପି ସେଠି ଲମ୍ବା ଧାଡ଼ିରେ ଲୋକଙ୍କୁ ଠିଆ କରାଯାଇଛି ।

ଯମରାଜ : ଏ ସମସ୍ୟା କଥାତ ମୋତେ ଆଗରୁ କେବେ କହିନା ।

ଚିତ୍ରଗୁପ୍ତ : କହିଲେ କ'ଣ ହେବ ଆଜ୍ଞା ?

ଯମରାଜ : ମୁଁ ତାର ପ୍ରତିକାର କରିବି ।

ଚିତ୍ରଗୁପ୍ତ : କି ପ୍ରତିକାର କରିବେ ?

ଯମରାଜ : ଦଣ୍ଡ ଦେବାର ଉପକରଣ ଆବଶ୍ୟକତା ଅନୁସାରେ ବଢ଼େଇ ଦେବି । ବର୍ତ୍ତମାନ ତେଲ କଡ଼େଇ ସଂଖ୍ୟା କେତେ ଅଛି ?

ଚିତ୍ରଗୁପ୍ତ : ମୁଁ ହିସାବ ଦେଖି କହୁଛି ଆଜ୍ଞା । ଦଶ, କୋଡ଼ିଏ, ପଚିଶ, ତିରିଶ, ତିରିଶ ଲକ୍ଷ ଆଜ୍ଞା !

ଯମରାଜ : ତେଲ କଡ଼େଇ ସଂଖ୍ୟା କୋଟିଏ କରିଦିଅ । ମର୍ତ୍ତ୍ୟର ଲୋକ ସଂଖ୍ୟା ଯେଉଁ ହାରରେ ବୃଦ୍ଧି ପାଉଛି ତା ସହିତ ଆମକୁ ତାଳ ଦେବାକୁ ପଡ଼ିବ । ସେମିତି ପଙ୍କ ପୋଖରୀ, ନରକକୁଣ୍ଡ, କରତଚିରା, ଶିମୁଳିଗଛ ଇତ୍ୟାଦି ଯେତେ ଦଣ୍ଡ ବ୍ୟବସ୍ଥା ଅଛି ତାକୁ ଚାରି ଗୁଣ ବୃଦ୍ଧି କରିଦିଅ ।

ଚିତ୍ରଗୁପ୍ତ : ଏସବୁ ବୃଦ୍ଧି କରି ହେବ ନାହିଁ ଆଜ୍ଞା ।

ଯମରାଜ : ଚିତ୍ରଗୁପ୍ତ । (ରାଗରେ)

ଚିତ୍ରଗୁପ୍ତ : ମୁଁ ମିଛ କହିନାହିଁ ଆଜ୍ଞା ।

ଯମରାଜ : ତୁମ ଚାକିରି କ'ଣ ତୁମକୁ ପିତା ଲାଗିଲାଣି ? ସବୁ କଥାରେ ନାହିଁ, ନାହିଁ କଣ କହୁଛ ?

ଚିତ୍ରଗୁପ୍ତ : ଆପଣ ଆଜ୍ଞା ପରିସ୍ଥିତି ବୁଝୁ ନାହାଁନ୍ତି ।

ଯମରାଜ : କି ପରିସ୍ଥିତି ?

ଚିତ୍ରଗୁପ୍ତ : ଯମପୁରରେ ଆଉ ମୋଟେ ଜାଗା ନାହିଁ ଆଜ୍ଞା । ଅଧିକ ପଙ୍କ ପୋଖରୀ, କି ନରକ କୁଣ୍ଡ ଖୋଳିବାକୁ ଜାଗା ନାହିଁ । ଏମିତିକି ଅଧିକ ତେଲ କଡ଼େଇଟାଏ ବି ରଖିବାକୁ ଜାଗା ନାହିଁ ।

ଯମରାଜ : ତମେ ତାହେଲେ ଗୋଟେ କାମ କର । ଯମପୁରରେ ସ୍ଥାନ ଅଭାବ ଏକଥା ଭଲ ଭାବରେ ଦର୍ଶାଇ ଦେବରାଜଙ୍କ ପାଖକୁ ଗୋଟେ ଦରଖାସ୍ତ

ଲେଖିଥାଉ । ତାକୁ କହି ସ୍ୱର୍ଗ ରାଜ୍ୟରୁ କିଛି, ଆଉ କିଛି ଜାଗା ବୈକୁଣ୍ଠ ପୁରରୁ ଆମ ଯମପୁର ପାଇଁ ନେବା । ତା ହେଲେ ଆମର ଆଉ ଏ ଅବସ୍ଥା ରହିବ ନାହିଁ ।

ଚିତ୍ରଗୁପ୍ତ : ଦେବରାଜ କ'ଣ ସ୍ୱର୍ଗରାଜ୍ୟରୁ କିଛି ଛାଡ଼ିବାକୁ ରାଜି ହେବେ ?

ଯମରାଜ : ନ ହେବେ କାହିଁକି ? ଏବେତ ବେଶୀ ଲୋକ ସ୍ୱର୍ଗକୁ କି ବୈକୁଣ୍ଠ-ପୁରକୁ ଯିବା ମୁଁ ଦେଖୁନାହିଁ । ତାଙ୍କର ସେଠି ଜାଗା ଖାଲି ପଡ଼ିଛି, ଆମର ଜାଗା ନିଅଣ୍ଟ ହେଉଛି । ନ ଦେବେ କାହିଁକି ?

ଅନନ୍ତ : ମୋତେ ଯଦି ଅନୁମତି ମିଳିବ, ମୁଁ ଗୋଟେ କଥା କହିବି ।

ଯମରାଜ : କୁହ ଅନନ୍ତ ? ନିର୍ଭୟରେ ମନ କଥା କହିବାରେ ଏଠି କିଛି ବାଧା ବନ୍ଧନ ନାହିଁ ।

ଅନନ୍ତ : ଯଦି ଦେବରାଜ ତାଙ୍କ ସ୍ୱର୍ଗ ରାଜ୍ୟରୁ କିଛି ଦେବାକୁ ରାଜି ହେବେ ନାହିଁ ବୋଲି ଆପଣଙ୍କର ସନ୍ଦେହ ହେଉଛି, ତେବେ ଏଠୁ କିଛି ମଣିଷଙ୍କୁ ଦେବରାଜଙ୍କ ପାଖକୁ ପଠାଇ ଦିଅନ୍ତୁ । ସିଏ ଦେଖନ୍ତୁ କେତେ ମଲା ମଣିଷ ବିଗ୍ଭର ନହୋଇପାରି ହାଜତରେ ଅଛନ୍ତି । ସିଏ ଆପଣଙ୍କ ପ୍ରକୃତ ସମସ୍ୟାଟା ଆଖିରେ ଦେଖିଲେ ତାଙ୍କର ନିଶ୍ଚୟ ହୃଦବୋଧ ହେବ । ସେ ନିଶ୍ଚୟ କିଛି ବ୍ୟବସ୍ଥା କରିବେ ।

ଚିତ୍ରଗୁପ୍ତ : ଏ ମଣିଷ ଖୁବ ଧୂର୍ତ୍ତ ଅଛି ହଜୁର । କୌଶଳରେ ସ୍ୱର୍ଗପୁରକୁ ଖସି ଯିବାକୁ ଆପଣଙ୍କୁ ଏ ଲୋକ କୁପରାମର୍ଶ ଦେଉଛି । ଥରେ ସିଏ ସ୍ୱର୍ଗରେ ପାଦ ଦେଲେ ଆପଣ ଆଉ ତାକୁ ଦଣ୍ଡ ଦେଇ ପାରିବେ ନାହିଁ ।

ଅନନ୍ତ : ନା, ଯମରାଜ । ଆପଣ ଯଦି ଏ ପରାମର୍ଶରେ ରାଜି ନୁହଁନ୍ତି, ମୁଁ ଆପଣଙ୍କୁ ଆଉ ଗୋଟେ ପରାମର୍ଶ ଦେବି । ଯେଉଁଥିରେ ଆପଣଙ୍କ ସମସ୍ୟାର ସମାଧାନ ହୋଇପାରିବ ।

ଯମରାଜ : ନିର୍ଭୟରେ କୁହ ଅନନ୍ତ ।

ଅନନ୍ତ : ଆପଣ ଦଣ୍ଡର ସମୟ ସୀମାକୁ କମାଇ ଦିଅନ୍ତୁ । ଯିଏ ନରକ କୁଣ୍ଡରେ ୪ ଦିନ ପଡ଼ିବା କଥା ତାକୁ ଗୋଟିଏ ଦିନରେ କୁଣ୍ଡରୁ ବାହାର କରି ଦିଅନ୍ତୁ । ସେମିତି ଯାହାକୁ ୪ ଘଣ୍ଟା ତେଲ କୁଣ୍ଡରେ ପକାଇବା କଥା ତାକୁ ଘଣ୍ଟାକ ପରେ ବାହାର କରି ଦିଅନ୍ତୁ । ଯା ଦ୍ୱାରା ଆପଣଙ୍କ

ଯମପୁରର ସ୍ଥାନ ଗ୍ରରି ଗୁଣ ହୋଇଯିବ । ଏକା ଜାଗାରେ ଆପଣ ଗ୍ରରି ଗୁଣ ଲୋକଙ୍କୁ ଦଣ୍ଡ ଦେଇପାରିବେ ।

ଯମରାଜ : ଇଏତ ଉତ୍ତମ ପ୍ରସ୍ତାବ । କ'ଣ କହୁଛ ଚିତ୍ରଗୁପ୍ତ ?

ଚିତ୍ରଗୁପ୍ତ : ସମସ୍ୟାର ସମାଧାନ ହୋଇଯିବ ସତ କିନ୍ତୁ......

ଯମରାଜ : କିନ୍ତୁ ପୁଣି କ'ଣ ?

ଚିତ୍ରଗୁପ୍ତ : ସବୁ ଅନ୍ୟାୟ ହୋଇଯିବ ।

ଯମରାଜ : ଅନ୍ୟାୟ କେମିତି ହେବ ?

ଚିତ୍ରଗୁପ୍ତ : ଯାହାଙ୍କୁ ଯେତିକି ଦଣ୍ଡ ଦେବା କଥା ତାକୁ ବଢ଼େଇ ଅଧିକ ଦଣ୍ଡ ଦେବା ଯେମିତି ଅନ୍ୟାୟ ତାକୁ କମେଇ ଦେବା ମଧ୍ୟ ସେମିତି ଅନ୍ୟାୟ ।

ଯମରାଜ : ସତ କଥା । ଠିକ୍ ଅଛି ତୁମେ ଗୋଟେ ଦରଖାସ୍ତ ଲେଖ । ମୁଁ ଆଜି ଦେବରାଜଙ୍କୁ ସାକ୍ଷାତ କରିବି ।

ଚିତ୍ରଗୁପ୍ତ : ହେଉ ଆଜ୍ଞା ।

ଯମରାଜ : ଆଜି ପାଇଁ ଦରବାର ଏଇଠୁ ବନ୍ଦ ରହୁ ।

ଯମଦୂତ : ଯମରାଜଙ୍କର ଜୟ ହେଉ, ଯମରାଜଙ୍କର ଜୟ ହେଉ !

ଅନନ୍ତ : ମୋର କିନ୍ତୁ ଯମରାଜଙ୍କ ପାଖରେ ଗୋଟେ ମାଗୁଣି ଅଛି ।

ଯମରାଜ : ଅବିଳମ୍ବେ ପ୍ରକାଶ କର । ଆମ ହାତରେ ସମୟ ବେଶୀ ନାହିଁ ।

ଅନନ୍ତ : ମୋତେ ଟିକେ ଆପଣଙ୍କ ରାଜ୍ୟ ବୁଲି ଦେଖିବାର ସୁଯୋଗ ମିଳୁ ।

ଚିତ୍ରଗୁପ୍ତ : ଏ ଲୋକ ବଡ଼ ଚତୁର । ଯା'କୁ ଯମପୁର ଦେଖିବାର ସୁଯୋଗ ନ ଦିଆ ଯାଉ ।

ଅନନ୍ତ : ଚତୁର ଲୋକ ଯମପୁର ଦେଖିବାରେ ଆପଣଙ୍କର ଆପତ୍ତି କାହିଁକି ମହାମନ୍ତ୍ରୀ ?

ଚିତ୍ରଗୁପ୍ତ : ମୋର ଆଶଙ୍କା ହୁଏ ତୁମେ ଯମପୁରରେ ବିଭ୍ରାଟର ସୂତ୍ରପାତ କରିବ ।

ଅନନ୍ତ : ଯମରାଜ ! ଆପଣଙ୍କ ମହାମନ୍ତ୍ରୀଙ୍କର ଇଏ ମିଥ୍ୟା ସନ୍ଦେହ । ମୁଁ ଗୋଟେ ମର୍ତ୍ତ୍ୟ ମଣିଷ । ଆପଣଙ୍କ ପରି ବିକ୍ରମଶାଳୀ ମହାମହିମ ଯମରାଜାଙ୍କର ମୁଁ ବା କି ଅନିଷ୍ଟ କରିପାରିବି ?

ଯମରାଜ : ହଉ, ଠିକ୍ ଅଛି । ତୁମେ ବୁଲି ଦେଖ । କିନ୍ତୁ ସାବଧାନ, କୌଣସି ଜିନିଷରେ ତୁମେ ହାତ ଦେବ ନାହିଁ ।

ଅନନ୍ତ : ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ ।

# ଦ୍ୱିତୀୟ ଆଲୋକ

[ ଦେବରାଜ ଇନ୍ଦ୍ରଙ୍କ ଦରବାର । ଇନ୍ଦ୍ର ଓ ଯମରାଜ ଦୁଇଟି ରାଜକୀୟ ଚଉକି ଉପରେ ବସି ଆଲୋଚନା କରୁଥିଲେ । ଦରବାରରେ ଆଉ କେହି ନାହାନ୍ତି । ]

ଯମରାଜ : ମୁଁ କିନ୍ତୁ ବଡ ସମସ୍ୟାରେ ପଡ଼ିଛି ଦେବରାଜ ।

ଦେବରାଜ : ଆପଣଙ୍କର ପୁଣି କି ସମସ୍ୟା ?

ଯମରାଜ : ମର୍ତ୍ତ୍ୟଲୋକରେ ଜନ୍ମ ସଂଖ୍ୟା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ମୃତ୍ୟୁହାର ମଧ୍ୟ ବହୁ ପରିମାଣରେ ବୃଦ୍ଧି ପାଇଛି । ତେଣୁ ଏତେ ମଲା ମଣିଷଙ୍କର ବିଚାର କରି ଦଣ୍ଡ ବିଧାନ କରିବା କଷ୍ଟକର ହୋଇ ପଡ଼ିଛି । ସବୁଠୁ ବେଶୀ ଅସୁବିଧା ହେଉଛି ଯମପୁରରେ ସ୍ଥାନାଭାବ ।

ଦେବରାଜ : ଯମପୁରରେ ସ୍ଥାନାଭାବ !

ଯମରାଜ : ହଁ, ଦେବରାଜ ! ଏଇ ଦରଖାସ୍ତଟି ପାଠ କରନ୍ତୁ । ଏଥିରେ ସବୁ କଥା ପରିଷ୍କାର ଭାବରେ ଲେଖାଯାଇଛି । (ଦରଖାସ୍ତଟି ବଢାଇ ଦେଲେ)

ଦେବରାଜ : ଦିଅନ୍ତୁ । ଏତ ଗୋଟେ ଦୀର୍ଘ ଦରଖାସ୍ତ । ମୁଁ ପରେ ପଢିବି । ଆପଣ ମୁହଁରେ କହି ଦିଅନ୍ତୁ ।

ଯମରାଜ : ଦରଖାସ୍ତଟାତ ମୋଟେ ଦି ପୃଷ୍ଠା ହେଇଛି, ଆଉ ବେଶୀ କ'ଣ ହେଲା ? ଟିକେ ଆପଣ ଆଖି ବୁଲେଇ ଆଣନ୍ତୁ । କେତେ ସମୟ ଏମିତି ଲାଗିବ କି ?

ଦେବରାଜ : ହଉ, ମୁଁ ଦେଖୁଛି । (ଦରଖାସ୍ତଟା ମନେ ମନେ ପଢିଲେ)

ଯମରାଜ : ହଁ, ସେଇ ଶେଷ ପାରାଟା ପଢିଦେଲେ ସବୁ ଜାଣିପାରିବେ ।

ଦେବରାଜ : ହଁ, ବୁଝିଲି । ଆପଣ ଚାହୁଁଛନ୍ତି ସ୍ୱର୍ଗରୁ ଆଉ ବୈକୁଣ୍ଠପୁରରୁ କିଛି ଜାଗା ନେଇ ଯମପୁରଟାକୁ ବଡ କରିବେ ।

ଯମରାଜ : ହଁ, ଆଜ୍ଞା ସେଇଆ ।

ଦେବରାଜ : ଏଟାତ ନିହାତି ଅସମ୍ଭବ କଥା । ସ୍ୱର୍ଗପୁରଟା ସ୍ୱର୍ଗପୁର । ସେଠାରୁ କିଛି ଯମପୁରକୁ ତ ଦେଇ ହେବ ନାହିଁ ।

ଯମରାଜ : କାହିଁକି ଆଜ୍ଞା ? ସ୍ୱର୍ଗପୁରରେ ସ୍ଥାନାଭାବ ସମସ୍ୟା ଅଛିନା କ'ଣ ?

ଦେବରାଜ : ଆପଣ ସବୁ କଥାକୁ କେବଳ ନିଜ ଦୃଷ୍ଟିରୁ ବିଚାର କରୁଛନ୍ତି ।

ଯମରାଜ : ଏଥିରେ ଅସୁବିଧା ରହିଲା କେଉଁଠି, ମୁଁ ତ କିଛି ଅନୁମାନ କରିପାରୁ ନାହିଁ ।

ଦେବରାଜ : ସ୍ୱର୍ଗଲୋକରୁ କିଛି ଜାଗା ଦେଇ ଦେଲେ ତାହା ଯମପୁର ହୋଇ ଯିବ ନାହିଁ; ବରଂ ସେଇ ସ୍ୱର୍ଗପୁର ହୋଇ ରହିବ । ପୁଣି ସେଇ ସ୍ୱର୍ଗ ମାଟିରେ ପାଦ ଦେବା ଲୋକକୁ ଆପଣ ଦଣ୍ଡ ଦେଇ ପାରିବେ ନାହିଁ ।

ଯମରାଜ : ଆଉ ବୈକୁଣ୍ଠପୁର ?

ଦେବରାଜ : ବୈକୁଣ୍ଠପୁରର ପ୍ରଶ୍ନ ଉଠୁ ନାହିଁ । ବୈକୁଣ୍ଠପୁରରେ କିଛି ସ୍ଥାନ ଯମପୁରକୁ ଦେବା କଥାତ ମୁଁ କଳ୍ପନା ସୁଦ୍ଧା କରିପାରୁ ନାହିଁ । ବୈକୁଣ୍ଠପୁର ସ୍ୱର୍ଗପୁରଠାରୁ ଆହୁରି ଦୁର୍ଲଭ ସ୍ଥାନ । ପାପ କରି ଯମପୁରକୁ ଯାଇଥିବା ଲୋକର ପାଦ ଯଦି ବୈକୁଣ୍ଠପୁର ପଡେ ତେବେ ମୋର ଇନ୍ଦ୍ରପଦ ଚାଲିଯିବ ?

ଯମରାଜ : ତାହେଲେ ମୋ ସମସ୍ୟାର ସମାଧାନ କିପରି ହେବ ?

ଦେବରାଜ : ଆପଣଙ୍କର ଏଇ ଗୋଟିଏ ସମସ୍ୟା ପାଇଁ ଆପଣ ଏତେ ବ୍ୟସ୍ତ ? କିନ୍ତୁ ମୋର ଅନେକ ସମସ୍ୟା ଥାଇବି ମୁଁ ଏତେ ବ୍ୟସ୍ତ ବିବ୍ରତ ନୁହଁ ।

ଯମରାଜ : ଆପଣଙ୍କର ପୁଣି କି ସମସ୍ୟା ?

ଦେବରାଜ : ମୁଁ ତ ସମସ୍ୟାର ସ୍ତୂପ ଉପରେ ଠିଆ ହୋଇଛି । କେଉଁ ସମସ୍ୟା କଥା କହିବି ?

ଯମରାଜ : ଦେବରାଜ ! ଆପଣ ଏସବୁ କ'ଣ କହୁଛନ୍ତି ? ଆପଣଙ୍କ ଦରବାରରେ ପବନ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବରୁଣ, କୁବେରଙ୍କ ପରି ଶକ୍ତିଶାଳୀ ଦେବଗଣ ଓ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ପରି ମହାମହିମ ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ସଂହାରକର୍ତ୍ତା ଥାଉଁ ଥାଉଁ ଆପଣଙ୍କର ପୁଣି କି ସମସ୍ୟା ?

ଦେବରାଜ : ମୋ ପାଇଁ ଏ ଦେବଗଣ ଗୋଟିଏ ଗୋଟିଏ ସମସ୍ୟା । ମୁଁ ସ୍ୱର୍ଗରାଜ୍ୟର ରାଜା ହେଲେ କ'ଣ ହେବ, ଏମାନଙ୍କ ଉପରେ ମୋର ନିୟନ୍ତ୍ରଣ ନାହିଁ । ପ୍ରତ୍ୟେକ ମୋଠାରୁ ବଳଶାଳୀ ହୋଇ

ଥିବାରୁ ମୋତେ କେହି ମାନନ୍ତି ନାହିଁ । ଏପରି ପରିସ୍ଥିତିରେ ରାଜ୍ୟ ଶାସନ କରିବା କେତେଦୂର କଠିନ ଆପଣ ଅନୁମାନ କରିପାରୁଥିବେ ।

ଯମରାଜ : ସେ ଯାହା ହେଉ, ଆପଣ ସେମାନଙ୍କର ରାଜା, ତେଣୁ ସେମାନେ ଆପଣଙ୍କ କଥା ମାନିବା ଉଚିତ୍ ।

ଦେବରାଜ : କିନ୍ତୁ ମତେ କେହି ମାନନ୍ତି ନାହିଁ । ଅଗ୍ନିଦେବ ଓ ପବନ ଦେବଙ୍କ କଥାତ ଆପଣ ଜାଣିଥିବେ । ସେମାନେ ଅତ୍ୟନ୍ତ କ୍ଷଣକୋପି । ସେମାନେ କାହାରି କଥା ଶୁଣିବା ଲୋକ ନୁହଁନ୍ତି । ଦେବର୍ଷି ନାରଦଙ୍କ କଥା ଆପଣଙ୍କୁ ଅଜଣା ନଥିବ । ବିନା କାରଣରେ କଳି ଲଗାଇବାରେ ତାଙ୍କର ଆନନ୍ଦ । ତାଙ୍କୁ ନିୟନ୍ତ୍ରଣ କରିବା ମୋ ଶକ୍ତିର ବାହାର ।

ଯମରାଜ : କିନ୍ତୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରତ ନିଶ୍ଚୟ ଆପଣଙ୍କର ସହାୟତା କରୁଥିବେ ?

ଦେବରାଜ : ମାୟାବୀ ବିଷ୍ଣୁଙ୍କୁ ମୁଁ ଆଜି ପର୍ଯ୍ୟନ୍ତ ଚିହ୍ନିପାରି ନାହିଁ । ସେ କେତେବେଳେ କି ମାୟା ରଚନା କରନ୍ତି ମୁଁ ବୁଝିପାରେ ନାହିଁ । ତାଙ୍କ ଦର୍ଶନ ପାଇବା ପାଇଁ ମୋତେ ବର୍ଷ ବର୍ଷ ଧରି ଅପେକ୍ଷା କରିବାକୁ ପଡେ । ବ୍ରହ୍ମାତ ସବୁବେଳେ ବେଦ ପାଠରେ ବ୍ୟସ୍ତ । ଅନ୍ୟର କଥା ଶୁଣିବାକୁ ତାଙ୍କୁ ବେଳ ନାହିଁ ? ମହେଶ୍ୱର ମୋର ବଡ ସମସ୍ୟା । ସିଏ ଅଳ୍ପକରେ ସନ୍ତୁଷ୍ଟ ହୋଇ ମଣିଷ ଓ ଅସୁରମାନଙ୍କୁ ଅଦ୍ଭୁତ ବର ଦେଇ ଦିଅନ୍ତି । ସେମାନେ ତାଙ୍କ ବରରେ ବଳିୟାନ ହୋଇ ସ୍ୱର୍ଗରେ ନାନା ଅନିଷ୍ଟ ଘଟାନ୍ତି ।

ଯମରାଜ : ବାସ୍ତବିକ୍ ଆପଣଙ୍କର ବହୁତ ସମସ୍ୟା ଅଛି ।

ଦେବରାଜ : ମୋର ସବୁଠୁ ବଡ଼ ସମସ୍ୟା ହେଉଛି ସ୍ୱର୍ଗଲୋକରେ ସମସ୍ତେ ସ୍ଥାୟୀ, ମୁଁ କେବଳ ଅସ୍ଥାୟୀ । ଏପରିକି ମୋର ସ୍ତ୍ରୀ ସଚୀ ସ୍ଥାୟୀ କିନ୍ତୁ ମୁଁ ନୁହେଁ । ମୋ ଇନ୍ଦ୍ରପଦ କେତେବେଳେ ଗୁଳିଯିବ ତାର ଠିକଣା ନାହିଁ ।

ଯମରାଜ : ଆପଣଙ୍କର ଏତେ ସବୁ ସମସ୍ୟା ଅଛି କିନ୍ତୁ ମୁଁ ଏହାପୂର୍ବରୁ ଏକଥା ଜାଣି ନଥିଲି । ଆପଣଙ୍କର ଏତେ ସମସ୍ୟା ଥିବାରୁ ଆପଣ

ମୋ ସମସ୍ୟାକୁ ହୃଦୟଙ୍ଗମ କରିପାରିବେ ।

ଦେବରାଜ : ମୋତେ ଆପଣଙ୍କ ସମସ୍ୟାର ଗୋଟିଏ ସମାଧାନର ପନ୍ଥା ଦେଖା ଯାଉଛି ।

ଯମରାଜ : କି ସମାଧାନ ଦେବରାଜ ?

ଦେବରାଜ : ଆପଣ ଯେମିତି ଯମପୁରର ସୀମା ବଢ଼େଇବା କଥା ଚିନ୍ତା କରୁଛନ୍ତି ସେମିତି ପୃଥିବୀର ମର୍ତ୍ତ ମଣିଷଙ୍କ ସଂଖ୍ୟା କମେଇଲେ ଆପଣଙ୍କ ସମସ୍ୟାର ସମାଧାନ ହୋଇ ପାରିବ ।

ଯମରାଜ : ତଥାପି ମୁଁ କିଛି ବୁଝିପାରୁ ନାହିଁ ।

ଦେବରାଜ : ପୃଥିବୀର ମୃତ୍ୟୁହାର କମାଇଲେ ଯମପୁରକୁ ଯାଉଥିବା ମର୍ତ୍ତ ମଣିଷଙ୍କ ଭିଡ କମିବ !

ଯମରାଜ : ସେଇଟା ସତ କଥା ଯେ କିନ୍ତୁ ମୃତ୍ୟୁହାର କମିବ କେମିତି ?

ଦେବରାଜ : ସେ ବ୍ୟବସ୍ଥା ମୁଁ କରିବି । ପୃଥିବୀରେ ଆଉ ଦୁଇ ଚାରିଟା ନୂଆ ଔଷଧ ଉଦ୍ଭାବନ କରାଇ ଦେଲେ ମୃତ୍ୟୁହାର ଆପେ ଆପେ କମିଯିବ । ତାଛଡା ଦୂଷିତ ଜଳ ଦୂଷିତ ବାୟୁ ଓ ଅପମିଶ୍ରିତ ଖାଦ୍ୟ ବହୁ ଲୋକଙ୍କ ମୃତ୍ୟୁର କାରଣ । ଅଧିକାଂଶ ରୋଗର ମୂଳ କାରଣ ଏଇ ତିନୋଟି ।

ଯମରାଜ : କିନ୍ତୁ ସେଥିପାଇଁ କଣ କରାଯିବ ? ଗାଁଆ ସହରର ଲୋକମାନେ ଦୂଷିତ ଜଳ ବ୍ୟବହାର କରୁଛନ୍ତି । ସେଠି ଆଉ ଅନ୍ୟ ଉପାୟ ନାହିଁ । ଦୂଷିତ ବାୟୁ ସେବନ କରିବାକୁ ସହରର ଲୋକମାନେ ବାଧ୍ୟ । କଳକାରଖାନା ଓ ଗାଡ଼ି, ମଟରର ଧୂଆଁ ଯେଉଁଠି ନାହିଁ ସେଟା ସହରରେ ଗଣା ନୁହଁ । ଆଉ ଅପମିଶ୍ରିତ ଖାଦ୍ୟତ ସବୁଠି । କି ଗାଆଁ କି ସହର ?

ଦେବରାଜ : ଆପଣତ ଜାଣିଛନ୍ତି ଅତୀତରେ କେତେ ଲୋକ ହଇଜା, ପ୍ଲେଗ୍‌ରେ ଆଉ ମେଲେରିଆରେ ମରୁଥିଲେ ? ଗୋଟେ ଗୋଟେ ଦିନରେ ହଜାର, ହଜାର ଲୋକ ପୋକ ମାଛି ପରି ମରୁଥିଲେ । ଗୋଟେ ଗୋଟେ ଗାଆଁ, ସହର ପୂରା ଘଟି ସଫା କରି ଦେଉଥିଲା ଏ ରୋଗ । କିନ୍ତୁ ମଣିଷ ଯେଉଁଦିନ ଜାଣିଲା ସାମାନ୍ୟ ମାଛି, ମୂଷା ଆଉ ମଶା ଏ ମହାମାରିର କାରଣ ବୋଲି ସେ ସେହିଦିନ ସେ

ରୋଗକୁ ସାବାଡ କରିଦେଲ । ଆଉ ସେ ରୋଗ ନାହିଁ ?

ଯମରାଜ : ସେକଥା ସତ । କିନ୍ତୁ .......

ଦେବରାଜ : କିନ୍ତୁ କ'ଣ ଯମରାଜ ? ମଣିଷ ମନ ଭିତରେ କୌଣସି ମତେ ଏଇ କଥାଟା ପୂରେଇ ଦେଲେ ଆମ କାମ ଶେଷ । ଜଳ, ବାୟୁ ଆଉ ଖାଦ୍ୟ ଏଇ ତିନୋଟିର । ବିଶୁଦ୍ଧତା ପ୍ରତି ମଣିଷ ସନ୍ଦେହ ହେବ । ତା ହେଲେ ମୃତ୍ୟୁହାର କମିଯିବ ।

ଯମରାଜ : ଆପଣ ଏଯାଏ ଯାହା କହିଲେ ଏତ ଭବିଷ୍ୟତ କାର୍ଯ୍ୟପନ୍ଥା କଥା କିନ୍ତୁ ବର୍ତ୍ତମାନ ପାଇଁ କିଛି କହିଲେ ନାହିଁ । ବର୍ତ୍ତମାନ ଶହ ଶହ ହଜାର ହଜାର ସଂଖ୍ୟାରେ ମଲା ମଣିଷ ହାଜତରେ ସଢୁଛନ୍ତି । ତାଙ୍କର କି ବ୍ୟବସ୍ଥା ମୁଁ କରିବି ?

ଦେବରାଜ : ପ୍ରତ୍ୟେକ ରାଜ୍ୟରେ କିଛିନା କିଛି ସମସ୍ୟା ରହିଛି । କୌଣସି ସମସ୍ୟାର ସମାଧାନ ହଠାତ୍ ହୋଇଯାଏ ନାହିଁ । ମୋତେ କିଛି ସମୟ ଦିଅନ୍ତୁ । ମୁଁ ଏ ବିଷୟରେ ବ୍ରହ୍ମା ଆଉ ବିଷ୍ଣୁଙ୍କ ସହିତ ପରାମର୍ଶ କଲପରେ ଆପଣଙ୍କୁ ଜଣାଇବି ।

ଯମରାଜ : ଦୟାକରି ଶୀଘ୍ର ଟିକେ ଏ ବିଷୟରେ ପଦକ୍ଷେପ ନେବେ ।

ଦେବରାଜ : ମୁଁ ସୁବିଧା ଦେଖି ପରାମର୍ଶ କରିବି ।

ଯମରାଜ : ମୁଁ ତେବେ ଆଜି ଆସୁଛି ଦେବରାଜ ।

( ମଞ୍ଚ ଅନ୍ଧକାର ହେଲ )



# ଶେଷ ଆଲୋକ

[ ଯମରାଜଙ୍କ ଦରବାର । ମଲା ମଣିଷମାନଙ୍କର ବିଚାର ଚାଲିଛି । ଯମରାଜ ସିଂହାସନରେ ବସିଛନ୍ତି । ଚିତ୍ରଗୁପ୍ତ ପାଞ୍ଜି ଦେଖୁଛନ୍ତି । ଅନନ୍ତ ଠିଆ ହୋଇ ଯମରାଜଙ୍କ ବିଚାର ଦେଖୁଛି ।]

ଚିତ୍ରଗୁପ୍ତ : ମୁଁ ଆଗରୁ ଜାଣିଥିଲି ମହାରାଜ ଇନ୍ଦ୍ର ତାଙ୍କ ରାଜ୍ୟରୁ ଛାଡ଼ି ମୁନରେ ମୁନେବି ଜାଗା ଛାଡ଼ିବେ ନାହିଁ ।

ଯମରାଜ : ତୁମ ଅନୁମାନ ସତ୍ୟ ଚିତ୍ରଗୁପ୍ତ । ଠିକ୍ ଅଛି ମୁଁ ଏକଥା ନାରଦଙ୍କ ଜରିଆରେ ବ୍ରହ୍ମା ଆଉ ବିଷ୍ଣୁଙ୍କ କାନରେ ନ ପକାଇ ଛାଡ଼ୁ ନାହିଁ ।

ଚିତ୍ରଗୁପ୍ତ : ହଁ ଆଜ୍ଞା ! ନାରଦ, ବ୍ରହ୍ମା ଆଉ ବିଷ୍ଣୁଙ୍କର ସବୁଠାରୁ ପ୍ରିୟ ।

ଯମରାଜ : କାଲି ତୁମେ ଯାଇ ନାରଦଙ୍କୁ ନିମନ୍ତ୍ରଣ କରିଆଣ । ତାଙ୍କର ଆତିଥ୍ୟର ସୁବନ୍ଦୋବସ୍ତ କର । ଯମପୁରର ସମସ୍ତ ଅଭାବ ଅସୁବିଧା ବୁଲାଇ ଦେଖାଅ । ଆଚ୍ଛା, ଆଜି ବିଚାର ଆରମ୍ଭ ହେଉ ।

ଚିତ୍ରଗୁପ୍ତ : ଆରେ କିଏ ଅଛରେ !

ଯମଦୂତ : ( ପ୍ରବେଶି ) ହଜୁର ।

ଚିତ୍ରଗୁପ୍ତ : ନାରଣ ସାମଲକୁ ହାଜର କରାଅ ।

ଯମଦୂତ : ଆଣିଛି ହଜୁର ।

ଚିତ୍ରଗୁପ୍ତ : ତା ପଛକୁ ପଛ ମୁଁ ଯେଉଁ କ୍ରମରେ ନମ୍ବର କରି ଦେଇଛି ସେମିତି ଅନ୍ୟ ମଣିଷମାନଙ୍କୁ ପେଶ୍ କରିବୁ ।

ଯମଦୂତ : ହଜୁର ।

ଯମରାଜ : ଆଜି କେତେ ଜଣଙ୍କର ବିଚାର ହେବ ?

ଚିତ୍ରଗୁପ୍ତ : ଚାରି ଜଣରୁ ଅଧିକ କରି ହେବ ନାହିଁ । କାରଣ ଦଣ୍ଡ ବ୍ୟବସ୍ଥା କରିବାରେ ଅସୁବିଧା ହେବ ।

ଯମଦୂତ : ଆଜ୍ଞା ଏ ହେଲା ନାରଣ ସାମଲ ।

ଯମରାଜ : ଚିତ୍ରଗୁପ୍ତ, ତୁମ ପାଞ୍ଜି ଦେଖ, ଏ ଲୋକର ଅପରାଧ କ'ଣ ?

ଚିତ୍ରଗୁପ୍ତ : ଆଜ୍ଞା ଏ ଲୋକ ବଡ଼ ଦୁର୍ଦ୍ଦାନ୍ତ । ଗୋଟିଏ ଯୁବତୀକୁ ଧର୍ଷଣ କରିଛି । ପ୍ରତିଦିନ ମଦ୍ୟପାନ କରେ । ଧମକ ଚମକ ଦେଇ ଦୋକାନୀମାନଙ୍କଠାରୁ ଟଙ୍କା ଆଦାୟ କରେ ଓ ସବୁବେଳେ ମିଛ କହେ ।

ଯମରାଜ : ଏ ଲୋକକୁ ଗରମ ତେଲ କଡ଼େଇରେ ପକେଇ ଦିଅ ।

ଚିତ୍ରଗୁପ୍ତ : ତା ପର ଲୋକକୁ ପେଶ୍ କର ।

ଯମଦୂତ : ଏ ଲୋକର ନାଆଁ ମଦନ ତ୍ରିପାଠୀ ।

ଯମରାଜ : ଚିତ୍ରଗୁପ୍ତ ! ଏ ଲୋକର ପାଞ୍ଜି ଦେଖ ।

ଚିତ୍ରଗୁପ୍ତ : ଏ ଲୋକ ଯୌତୁକ ପାଇଁ ନିଜ ପୁତ୍ରବଧୂକୁ କିରୋସିନି ଢ଼ାଳି ଜାଳି ଦେଇଥିଲା ।

ଯମରାଜ : ଏ ଲୋକର ଗୋଡରେ ଦଉଡ଼ି ବାନ୍ଧି ଗୋଟିଏ ଗଛ ଡାଳରେ ଝୁଲେଇ ଦିଅ । ତଳୁ ନିଆଁ ଜାଳି ଦିଅ ।

ଚିତ୍ରଗୁପ୍ତ : ଆଉ ଜଣକୁ ପେଶ୍ କର ।

ଯମଦୂତ : ଇଏ ଅବିନାଶ ଦାସ ।

ଯମରାଜ : ଦେଖ ଏ ଲୋକ କି ଅପରାଧ କରିଛି ।

ଚିତ୍ରଗୁପ୍ତ : ଏ ଲୋକ ଜଣେ ଅସାଧୁ ବ୍ୟବସାୟୀ । ଭେଜାଲ ଔଷଧ ବିକ୍ରି କରେ । ଭେଜାଲ ଔଷଧ ଖାଇ ବହୁଲୋକ ମରିଛନ୍ତି ।

ଯମରାଜ : ଏ ଲୋକ ଦିନବେଳା ନରକପୁରର ମଇଳା ଗାଡ଼ି ଟାଣୁ । ରାତିରେ ଯାକୁ ଜଳନ୍ତା ନିଆଁ ଉପରେ ଠିଆକର । ଯା'ପର କେଶ୍ ପେଶ୍ କର ।

ଯମଦୂତ : ଏ ଲୋକ ଶୁକଦେବ ପରିଡ଼ା (ହାଉଡ଼ା) ।

ଚିତ୍ରଗୁପ୍ତ : ଏ ଲୋକ ନିଜେ କିଛି ଅପରାଧ କରି ନାହିଁ । କିନ୍ତୁ......

ଯମରାଜ : କିନ୍ତୁ କ'ଣ ?

ଚିତ୍ରଗୁପ୍ତ : ଅପରାଧକୁ ପ୍ରଶ୍ରୟ ଦେଇଛି ।

ଯମରାଜ : ନିର୍ଦ୍ଦିଷ୍ଟ ଅଭିଯୋଗ ପେଶ୍ କର ।

ଚିତ୍ରଗୁପ୍ତ : ଏ ଲୋକ ଜଣେ ଲୋକ ଘରେ ଗ୍ରକରଥିଲା । ତା ମାଲିକ ଖୁବ୍ ନୀଚ ପ୍ରକୃତିର ଲୋକ । ଏ ଲୋକକୁ ତା' ଜମିରେ ସକାଳୁ ସଞ୍ଜ ପର୍ଯ୍ୟନ୍ତ ଖଟାଏ । ଦିନଟିଏ ହେଲେ ଛୁଟିଦିଏ ନାହିଁ । ଖୁବ କମ୍ ମଜୁରୀ ଦିଏ । ଦିନେ ଏ ଲୋକର ପୁଅ ଜ୍ୱରରେ ପଡ଼ିଥାଏ । ତା ସ୍ତ୍ରୀ କହିଲା ପୁଅ ପାଇଁ ଔଷଧ ଆଣ । କିନ୍ତୁ ଏଇ ସମୟରେ ତା ମାଲିକର ଲୋକ

ଆସି କାମକୁ ଡାକିଲା । ସିଏ ନ ଯିବାରୁ ତାକୁ ଯୋର ଜବରଦସ୍ତ ବାନ୍ଧିକରି କାମକୁ ନିଅଗଲା । ପୁଅଟି ଜ୍ୱରରେ ପଡି ପଡ଼ି ମରିଗଲା । ତଥାପି ଏ ଲୋକ ମାଲିକର ଏ ଅନ୍ୟାୟର ପ୍ରତିରୋଧ କଲା ନାହିଁ । ଅନ୍ୟାୟକୁ ନୀରବରେ ସହି ଯିବାଟା ଏ ଲୋକର ଅପରାଧ ।

ଯମରାଜ : ଏ ଲୋକର ମୁଣ୍ଡରେ କରତ ଲଗାଇ ଦୁଇ ଫାଳ କରି ଚିରିଦିଅ । ତାପର କେଶ୍ ପେଶ୍ କର ।

ଚିତ୍ରଗୁପ୍ତ : ଏ ଲୋକର ନାମ ହିମାଂଶୁ ଜେନା ।

ଚିତ୍ରଗୁପ୍ତ : ଗାଆଁର ପ୍ରତିପତିଶାଳୀ ଯୁବକ ମର୍ଦ୍ଦରାଜ ଏ ଲୋକକୁ ଆଦେଶ ଦେଲା ବୋତଲେ ମଦ ଆଣି ତାକୁ ଉପହାର ଦେବାକୁ । କିନ୍ତୁ ଏ ଲୋକଟି ଗରିବ ଥିଲା । ସେ ମଦ ଆଣି ଦେବାର କ୍ଷମତା ନାହିଁ ବୋଲି କହିବାରୁ ମର୍ଦ୍ଦରାଜ ତାକୁ ନିସ୍ତୁକ ମାଡ ମାରିଲା । କିନ୍ତୁ ଏ ଲୋକ କାନ୍ଦି କାନ୍ଦି ଘରକୁ ଗଲା । ମର୍ଦ୍ଦରାଜ ବିରୁଦ୍ଧରେ ଥାନାରେ ଆତେଲା ନ ଦେଇ ନୀରବ ରହିଲା ।

ଯମରାଜ : ନୀରବରେ ଅନ୍ୟାୟକୁ ସହିବା ଫଳରେ ଏଭଳି ଆହୁରି ଅନେକ ଅନ୍ୟାୟ କାମ କରିବାକୁ ମର୍ଦ୍ଦରାଜ ପ୍ରେରଣା ପାଇଲା । ତେଣୁ ଏ ଲୋକ ପାପି । ଯାକୁ... ... ...

ଅନନ୍ତ : ଏଇଠି ମୋର ଗୋଟେ କଥା କହିବାର ଅଛି ।

ଚିତ୍ରଗୁପ୍ତ : ତମେ ପୁଣି କାହିଁକି ଏଠିକି ଆସିଲ ଅନନ୍ତ ? ତୁମର ବିଚାର ବେଳ ହୋଇ ନାହିଁ ।

ଅନନ୍ତ : ମୁଁ କାଲି ଯମପୁର ସାରା ବୁଲିକି ଦେଖିଲି । ପଚାରି ବୁଝିଲି... ... ...

ଚିତ୍ରଗୁପ୍ତ : ତୁମେ ଚୁପ୍ କର, ଏଟା ଯମପୁର । ଏଠି ଠିକ୍ ନ୍ୟାୟ ବିଚାର ହୁଏ । ଦେଖୁଛ ଏ ବଡ ନିକିତି ? ଲୋକର ପାପ ଆଉ ଧର୍ମର ଓଜନ ଯମରାଜଙ୍କ ସାକ୍ଷାତରେ ହୁଏ । ସାକ୍ଷୀ ପ୍ରମାଣ କି ଓକିଲଟି ଦରକାର ନାହିଁ ।

ଯମରାଜ : ଚିତ୍ରଗୁପ୍ତ ! ସେ ଲୋକ କ'ଣ କହିବାକୁ ଚାହୁଁଛି ତାକୁ କହିବାକୁ ଦିଅ ।

ଅନନ୍ତ : ଯମରାଜଙ୍କର ଜୟ ହେଉ ।

ଯମରାଜ : କୁହ ଅନନ୍ତ ! ତୁମେ କ'ଣ କହିବାକୁ ଚାହୁଁଚ କୁହ ।

ଅନନ୍ତ : ଆଜ୍ଞା ମୁଁ ଦଣ୍ଡ ଭୋଗୁଥିବା ମଣିଷମାନଙ୍କୁ ପଚାରି ବୁଝିଲି ସେମାନଙ୍କ ମଧ୍ୟରୁ ଅଧିକାଂଶ ଆପଣଙ୍କ ବିଚାରରେ ଅସନ୍ତୁଷ୍ଟ ।

ଯମରାଜ : ତୁମେ ମିଛ କହୁଛ ଅନନ୍ତ । ମୋର ବିଚାରରେ କେବେ ଭୁଲ ହୋଇ ପାରେନା ।

ଅନନ୍ତ : ମୁଁ ବି ତାଙ୍କ କଥା ବିଶ୍ୱାସ କରୁ ନଥିଲି । କିନ୍ତୁ.........

ଯମରାଜ : କିନ୍ତୁ କ'ଣ ?

ଅନନ୍ତ : ଏଇ କିଛି ସମୟ ହେଲା ଆପଣଙ୍କ ଦରବାରରେ ଆପଣଙ୍କ ବିଚାର ଶୁଣି ମୋତେ ଲାଗିଲା ସେମାନଙ୍କ ଅଭିଯୋଗ ନିପଟ ସତ୍ୟ । ବିନା ଅପରାଧରେ ସେମାନଙ୍କୁ କଠିନ ଦଣ୍ଡ ଦିଆ ଯାଉଛି ।

ଯମରାଜ : ତୁମେ ଚ଼ପକର ଅନନ୍ତ । ମୋ ବିଚାର ବିରୁଦ୍ଧରେ ଆଉ ପଦେ କହିଲେ ତୁମର ଜିଭ କାଟି ଦିଆଯିବ ।

ଅନନ୍ତ : କିନ୍ତୁ ଆଜ୍ଞା ଆମ ପୃଥିବୀର ବିଚାର ଅଲଗା । ସେଠି ନୀରବରେ ସବୁ ଅନ୍ୟାୟ, ଅତ୍ୟାଚାରକୁ ସହିବା ଅପରାଧ ନୁହେଁ । ବରଂ ସହିଷ୍ଣୁ ମଣିଷ ଭାବରେ ସେମାନଙ୍କର ସୁନାମ ବଢ଼େ ।

ଯମରାଜ : ମୁଁ ତୁମ କଥା ଜମା ବୁଝିପାରୁ ନାହିଁ ।

ଅନନ୍ତ : ଏଠି ଆପଣଙ୍କ ବିଚାର ମୁଁ ଦେଖିଲି । ଅନ୍ୟାୟ ଅତ୍ୟାଚାରର ପ୍ରତିବାଦ ନକରି ନୀରବରେ ସହି ଯିବାଟା ଅପରାଧ ବୋଲି ଆପଣ ଶାସ୍ତି ଦେଉଛନ୍ତି । କିନ୍ତୁ ପୃଥିବୀରେ ଆଜ୍ଞା ବିଚାରାଳୟ ଅଛି । ଆଇନ ପୁସ୍ତକ ଅଛି । ଅନ୍ୟାୟ, ଅତ୍ୟାଚାର କରୁଥିବା ଲୋକ ଅପରାଧୀ ବୋଲି ବିବେଚିତ ହୁଅନ୍ତି । କିନ୍ତୁ ଅନ୍ୟାୟ, ଅତ୍ୟାଚାରକୁ ମୁଣ୍ଡପାତି ସହିନେବା ଯେ ଅପରାଧ ଏ କଥା କୌଣସି ବିଚାରାଳୟ ସାବ୍ୟସ୍ତ କରି ନାହିଁ ।

ଯମରାଜ : ସେମାନଙ୍କ ପାଇଁ ପୃଥିବୀର ଆଇନ୍‌ରେ ଦଣ୍ଡ ବିଧାନର କିଛି ବ୍ୟବସ୍ଥା ନାହିଁ ?

ଅନନ୍ତ : ନାହିଁ ଆଜ୍ଞା । ସେଥି ପାଇଁ ପୃଥିବୀରେ ଅଧିକାଂଶ ଲୋକ ଆଜି ଅନ୍ୟାୟ ଅନୀତି, ଦୁର୍ନିତି ଦେଖିବି ନ ଦେଖିବା ପରି ଚୁପ୍ ରହୁଛନ୍ତି । କୌଣସି ଅନ୍ୟାୟ କାମର ପ୍ରତିବାଦ ପାଇଁ ଯଦି କେହି ବିଚାରାଳୟର ଆଶ୍ରୟ ନିଏ, ତାହା ସାକ୍ଷୀ, ପ୍ରମାଣ ଅଭାବରୁ ଖାରଜ ହୋଇଯାଏ । ସବୁ

ଆଖି ଆଗରେ ଦେଖିଥିବା ଲୋକ ବି ସାକ୍ଷୀ ହେବାକୁ ପ୍ରସ୍ତୁତ ନୁହଁ । ପୃଥିବୀର ସବୁଠୁ ବଡ ନୀତି ବାଣୀ ହେଉଛି — ସବ୍‌ସେ ଚୁପ୍ ଭଲ । ଦେହରେ ମଳି, ଧୂଳି ଲାଗିବ ନାହିଁ, ପାଦରେ କଣ୍ଟା ଫୁଟିବ ନାହିଁ । ମନ ପ୍ରଫୁଲ୍ଲ ରହିବ । ରାତିରେ ଭଲ ନିଦ ହେବ ।

ଯମରାଜ : ଅଦ୍ଭୁତ କଥା !

ଅନନ୍ତ : ଆହୁରି ଅଛି ଆଜ୍ଞା । ଏବେ ପୃଥିବୀର ଲୋକମାନେ ଆଉ କେଇ ପାଦ ଆଗେଇ ଗଲେଣି ।

ଯମରାଜ : ମାନେ ?

ଅନନ୍ତ : ଅନ୍ୟାୟ, ଅନୀତି, ଅତ୍ୟାଚାର କରୁଥିବା ଲୋକର ପ୍ରତିରୋଧ ନକରି ସେମାନଙ୍କ ସ୍ତୁତିଗାନ କରୁଛନ୍ତି । ସ୍ତୁତିଗାନ କଲେ ବେଶ୍ କିଛି ଫାଇଦା ମିଳୁଛି ବୋଲି ସ୍ତୁତିଗାନ ପାଇଁ ଏବେ ରୀତିମତ ପ୍ରତିଦ୍ୱନ୍ଦିତା ଦେଖା ଯାଉଛି ।

ଯମରାଜ : ୱାଣ୍ଡରଫୁଲ୍ ।

ଚିତ୍ରଗୁପ୍ତ : କିନ୍ତୁ ମହାରାଜ ଏହା ସହିତ ଆମ ଯମପୁରର କି ସମ୍ପର୍କ ଅଛି ? ଏ ବାଜେ କଥା ଶୁଣି ସମୟ ନଷ୍ଟ କରିବା ଉଚିତ୍ ନୁହଁ ।

ଯମରାଜ : ସତକଥା । ତୁମେ ଏ ସବୁ ବନ୍ଦ କର ଅନନ୍ତ । ତୁମ କଥାର ଯମପୁର ସହିତ କିଛି ସମ୍ପର୍କ ନାହିଁ ।

ଅନନ୍ତ : ସମ୍ପର୍କ ଅଛି ଆଜ୍ଞା । ସମ୍ପର୍କ ନଥିଲେ ମୁଁ ଅଯଥାରେ ଯମରାଜଙ୍କ ସମୟ ନଷ୍ଟ କରନ୍ତି ନାହିଁ ।

ଯମରାଜ : କି ସମ୍ପର୍କ ଅଛି ?

ଅନନ୍ତ : ମୁଁ ଦେଖୁଛି ନୀରବରେ ଅନ୍ୟାୟ, ଅତ୍ୟାଚାରକୁ ସହ୍ୟ କରି ଅପରାଧ ଅର୍ଜନ କରି ଦଣ୍ଡ ପାଉଥିବା ମଲା ମଣିଷଙ୍କ ସଂଖ୍ୟା ଏ ଯମପୁରରେ ପ୍ରାୟ ଅର୍ଦ୍ଧେକ ।

ଯମରାଜ : ତୁମେ କ'ଣ କହିବାକୁ ଚାହୁଁଛ ?

ଅନନ୍ତ : ମୁଁ ଯାହା କହୁଛି ସେଥିରେ ଆପଣଙ୍କ ସମସ୍ୟାର ସମାଧାନ ହୋଇ ଯିବ ଆଜ୍ଞା । ଆପଣ ଆଉ ଅଧିକ ସ୍ଥାନ ପାଇଁ ବ୍ରହ୍ମା କିମ୍ବା ବିଷ୍ଣୁଙ୍କୁ ଗୁହାରି କରିବାକୁ ପଡ଼ିବ ନାହିଁ ।

ଯମରାଜ : ମାନେ ?

ଅନନ୍ତ : କେବଳ ଅନ୍ୟାୟର ପ୍ରତିବାଦ ନ କରି ନୀରବରେ ସହିଯାଇ ଅପରାଧୀ ସାବ୍ୟସ୍ତ ହୋଇ ଏ ଯମପୁରରେ ଦଣ୍ଡ ପାଉଥିବା ଲୋକମାନେ ଅନ୍ୟ ସବୁ ଦୃଷ୍ଟିରୁ ଉତ୍ତମ ମଣିଷ । ସେମାନେ ଏଇ ଅପରାଧ ନ କରିଥିଲେ ସେମାନଙ୍କ ଭିତରୁ କେତେକ ସ୍ୱର୍ଗକୁ ଯାଇ ଥାଆନ୍ତେ ଓ ଆଉ କେତେକ ବୈକୁଣ୍ଠକୁ ଯାଇ ଥାଆନ୍ତେ । ଆପଣଙ୍କ ଯମପୁରରୁ ଅଧା ଏଇମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଛି । ଏମାନେ ଯଦି ସ୍ୱର୍ଗକୁ କି ବୈକୁଣ୍ଠକୁ ଯାଇ ଥାଆନ୍ତେ ତେବେ ଯମପୁରରେ ସ୍ଥାନାଭାବର ସମସ୍ୟା ମୋଟେ ନଥାନ୍ତା ।

ଯମରାଜ : ଇଉ ଆର୍ ରାଇଟ୍ ମାଇଁ ବଏ । ମୁଁ ତୁମ କଥା ସହିତ ଶତକଡା ଶହେ ଏକମତ । କିନ୍ତୁ ଯାର କି ପ୍ରତିକାର କରାଯାଇ ପାରିବ ?

ଅନନ୍ତ : ଏହାର ପ୍ରତିକାର ଅତ୍ୟନ୍ତ ସହଜ ଆଜ୍ଞା । ଅନ୍ୟାୟକୁ ନୀରବରେ ସହିବାଟା ଯମପୁରରେ ଘୋର ଅପରାଧ ଭାବରେ ଗ୍ରହଣ କରାଯାଏ, ଏଇ କଥାଟା ପୃଥିବୀବାସୀଙ୍କୁ ଜଣାଇ ଦେଲେ ଏହାର ଯାଦୁକରୀ ଫଳ ଆପଣଙ୍କୁ ମିଳି ଯିବ । ଦେଖିବେ ଅପରାଧୀଙ୍କ ସଂଖ୍ୟା ନିଶ୍ଚୟ କମି ଯିବ ?

ଯମରାଜ : ଇଏତ ଉତ୍ତମ ପ୍ରସ୍ତାବ କିନ୍ତୁ କିଏ ପୃଥିବୀବାସୀଙ୍କୁ ଏକଥା ଜଣାଇବ ? କିପରି ଜଣାଇବ ?

ଚିତ୍ରଗୁପ୍ତ : ମହାରାଜ ! ମୋର କିନ୍ତୁ ସନ୍ଦେହ ହେଉଛି ।

ଯମରାଜ : ତୁମର ପୁଣି କି ସନ୍ଦେହ ହେଉଛି ମହାମନ୍ତ୍ରୀ ?

ଚିତ୍ରଗୁପ୍ତ : ଏ ଅନନ୍ତ ମଲା ମଣିଷ ନୁହେଁ । ଜୀଅନ୍ତା ମଣିଷ ।

ଯମରାଜ : ତୁମେ କେମିତି ଜାଣିଲ ?

ଚିତ୍ରଗୁପ୍ତ : ମଲା ମଣିଷ ଯମପୁରରେ କଥା ବାର୍ତ୍ତା କରିପାରେ କିନ୍ତୁ ବିଶ୍ୱର ବୁଦ୍ଧି ତାର ଲୋପ ପାଇ ଯାଇଥାଏ । ତାକୁ କେବଳ ତା ନିଜର ଅତୀତ ବ୍ୟତୀତ ଆଉ କିଛି ଦୃଶ୍ୟ ହୁଏ ନାହିଁ । କିନ୍ତୁ ଇଏତ ଜୀଅନ୍ତା ମଣିଷ ପରି ବିଶ୍ୱର ବୁଦ୍ଧିର କଥା କହୁଛି । ତେଣୁ ମୋର ସନ୍ଦେହ ହୁଏ ଅନନ୍ତ ଜିଅନ୍ତା ମଣିଷ ।

ଯମରାଜ : ଇଏ କେମିତି ସମ୍ଭବ ହେଲା ? ଯମପୁରରେ ସ୍ୱଦେହରେ ଜୀଅନ୍ତା

ମଣିଷ ପ୍ରବେଶ କଲା କେମିତି ? ଚିତ୍ରଗୁପ୍ତ ତୁମେ ଅନନ୍ତର ପାଞ୍ଜି ତୁରନ୍ତ ଦେଖ । ବି କୁଇକ ।

ଚିତ୍ରଗୁପ୍ତ : ଦେଖୁଛି ଆଜ୍ଞା ! ଆଚ୍ଛା ଅନନ୍ତ ତୁମର ପୂରା ପରିଚୟ ଦିଅ । ମାନେ ତୁମର ପୂରା ନାମ, ବାପାଙ୍କ ନାମ, ଗାଆଁ ନାମ ଇତ୍ୟାଦି ।

ଅନନ୍ତ : ମୋର ନାମ ଅନନ୍ତ ପ୍ରସାଦ ମହାପାତ୍ର । ପିତାଙ୍କ ନାମ ପ୍ରତାପ କିଶୋର ମହାପାତ୍ର । ଗାଆଁ ନାଆଁ–ମଙ୍ଗଳପୁର, ଜିଲ୍ଲା–ଢେଙ୍କାନାଳ, ଓଡ଼ିଶା, ଭାରତ ।

ଚିତ୍ରଗୁପ୍ତ : ତୁମର ବୟସ କେତେ ?

ଅନନ୍ତ : ୩୩ ବର୍ଷ ।

ଚିତ୍ରଗୁପ୍ତ : ଭୁଲ୍ ହୋଇଗଲା ଆଜ୍ଞା । ୭୭ ବର୍ଷରେ ଅନନ୍ତର ମୃତ୍ୟୁ ହେବା କଥା । କିନ୍ତୁ ଭୁଲ୍‌ରେ ୩୩ ବର୍ଷରେ ତାକୁ ଅଣା ଯାଇଛି ।

ଯମରାଜ : ତା ହେଲେ ଅନନ୍ତ ମଲା ମଣିଷ ନୁହେଁ ଜୀଅନ୍ତା ମଣିଷ ?

ଚିତ୍ରଗୁପ୍ତ : ହଁ ଆଜ୍ଞା ! ଜୀଅନ୍ତା ମଣିଷ ।

ଯମରାଜ : ଏ ଭୁଲ କେମିତି ହେଲା ?

ଅନନ୍ତ : କୌଣସି ଲୋକ ଗୋଟିଏ ପଦବୀରେ ବେଶୀଦିନ ରହିଲେ କାମରେ ଢିଲା କରେ । ସମୟ ପଡ଼ିଲେ ଦୁର୍ନୀତି କରେ । ସେଥିପାଇଁ ଆମ ପୃଥିବୀରେ ବଦଳିର ବ୍ୟବସ୍ଥା ଅଛି ।

ଚିତ୍ରଗୁପ୍ତ : ଏ ଭୁଲ ମୁଁ ଜାଣି ଜାଣି କରି ନାହିଁ ଆଜ୍ଞା !

ଯମରାଜ : କିନ୍ତୁ ଆପଣଙ୍କ ଏ ଭୁଲ ଯୋଗୁ... ... ... ...

ଅନନ୍ତ : ମୁଁ ସତ କହୁଛି ଆଜ୍ଞା ଇଏ ଭୁଲ ନୁହଁ, ଚିତ୍ରଗୁପ୍ତଙ୍କର ଏହା ଖାମ-ଖିଆଲି କାମ ଯୋଗୁ ମୋ ପରି ଅନେକ ଲୋକ ନିର୍ଯ୍ୟାତନା ଭୋଗୁଛନ୍ତି ।

ଯମରାଜ : ଏକଥାର ଜବାବ ଦିଅ ଚିତ୍ରଗୁପ୍ତ କେମିତି ଏତେ ବଡ଼ ଭୁଲ ହେଲା ?

ଚିତ୍ରଗୁପ୍ତ : ଆଜ୍ଞା ମୋର ୩ ଆଉ ୭ ପ୍ରାୟ ଏକାପରି । ତେଣୁ ୭୭ଟା ମୋତେ ୩୩ ପରି ଦେଖାଗଲା ।

ଯମରାଜ : ତୁରନ୍ତ ଅନନ୍ତକୁ ସସମ୍ମାନେ ପୃଥିବୀରେ ତା ଘରେ ଛାଡ଼ି ଦେଇ ଆସିବାର ବ୍ୟବସ୍ଥା କର ।

ଚିତ୍ରଗୁପ୍ତ : ବ୍ୟବସ୍ଥା କରୁଛି ଆଜ୍ଞା । ଦୂତ !

ଯମଦୂତ : ଆଦେଶ କରନ୍ତୁ ମହାମନ୍ତ୍ରୀ ।

ଚିତ୍ରଗୁପ୍ତ : ଏ ଲୋକକୁ ସସମ୍ମାନେ ନେଇ ପୃଥିବୀରେ ତାଙ୍କ ଘରେ ଛାଡ଼ି ଦେଇ ଆସ ।

ଯମରାଜ : ଅନନ୍ତ ! ତୁମକୁ ମୋର ଗୋଟିଏ ଅନୁରୋଧ ଅଛି ।

ଅନନ୍ତ : ତୁମେ ତ ଯମଲୋକର ସ୍ଥାନାଭାବକୁ ଦେଖୁଛ । ଏହି ସମସ୍ୟାର ସମାଧାନର ଉପାୟ ମଧ୍ୟ ତୁମକୁ ଜଣା । ମର୍ତ୍ତ୍ୟ ଲୋକରେ ତୁମେ ତାହାର ପ୍ରଚାର କରିବ ।

ଅନନ୍ତ : କ'ଣ ପ୍ରଚାର କରିବି ?

ଯମରାଜ : ମର୍ତ୍ତ୍ୟବାସୀଙ୍କୁ କହିବ ଯେ ଚୂପଚାପ ଅନ୍ୟାୟକୁ ସହିବା ମଧ୍ୟ ଅନ୍ୟାୟ ଅନ୍ୟାୟର ବିରୋଧ ନ କରିବାକୁ ଯମଲୋକରେ ଦଣ୍ଡନୀୟ ଅପରାଧ ଭାବରେ ଗଣାଯାଏ । ଓ ସେମାନଙ୍କୁ କଠୋର ଦଣ୍ଡ ଦିଆଯାଏ ।

ଅନନ୍ତ : ଯାଜ୍ଞା, କହିବି । ନିଶ୍ଚୟ କହିବି । ମୁଁ ଯାଉଛି ଆଜ୍ଞା, ଯମ ରାଜଙ୍କର ଜୟ ହେଉ ।

( ଯମଦୂତ ସହିତ ଅନନ୍ତ ପୃଥିବୀ ଅଭିମୁଖେ ଗଲେ । ମଞ୍ଚ ଧୀରେ ଧୀରେ ଅନ୍ଧକାର ହେଲା । )

# ଆନନ୍ଦ ଚନ୍ଦ୍ର ପଣ୍ଡାଙ୍କ ଦ୍ୱାରା ରଚିତ
# ନାଟକ

## ଆକାଶବାଣୀରୁ ପ୍ରସାରିତ ନାଟକ

- ଅନେକ ମୁହଁ
- ସୂର୍ଯ୍ୟୋଦୟ
- ଆଲୋକର ଅନ୍ଧକାର
- ନୀଳ କଇଁ
- ରେଖାଚିତ୍ର
- ଚିଠି
- ଆକ୍‌ସିଡ଼େଣ୍ଟ
- ଅମୁହାଁ ଦେଉଳ
- ସୂର୍ଯ୍ୟ ପରାଗ
- ଅଚିହ୍ନା ଅପରାଧ
- ଆନୁଆଲ୍ ଫଙ୍କସନ୍
- ସ୍ୱାସ୍ଥ୍ୟ ନିବାସ
- ଶୋଷ
- ଅଧିକାର

## ଦୂରଦର୍ଶନ କେନ୍ଦ୍ରରୁ ପ୍ରଦର୍ଶିତ ନାଟକ

- ଝିଅ ଦେଖା
- ବୁଢ଼ୀଆଣୀ ଜାଲ

## ପ୍ରକାଶିତ ଏକାଙ୍କିକା ସଂକଳନ

- ଦୁଇ ଦିଗନ୍ତ